# ସାଧନ-ଭକ୍ତି

ବା୨୦କ ।

ବ୍ରଜବାସୀ

ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀ ।

ଶ୍ରୀ ରାଧାଙ୍କ

# କଳଙ୍କଭଞ୍ଜନ ନାଟକ ।

ବ୍ରଜବାସୀ—

ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀଙ୍କ ରଚିତ ।

**ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।**



ଦ୍ୱିତୀୟ ସଂସ୍କରଣ ।

ପ୍ରାପ୍ତିସ୍ଥାନ:—

**ଦାଶରଥି ପୁସ୍ତକାଳୟ, କଟକ ।**

ମୂଲ୍ୟ ଟ ୦ ।  ଚାରି ଅଣା ମାତ୍ର ।

# ଭୂମିକା ।

ଗୋଲୋକପତି-ଭଗବାନ ବ୍ରଜମଣ୍ଡଳରେ ସ୍ୱୟଂ ଅବତୀର୍ଣ୍ଣ ହୋଇ ଯେଉଁ ଯେଉଁ ଲୀଳାଖେଳାମାନ କରିଥିଲେ, ତାହା ସବୁ ଅଲୌକିକ କାର୍ଯ୍ୟ । ଜନ୍ମହେବା ଛଦିନ ପରେ କ୍ଷୀର ପାନ ଛଳରେ ପୁତନା-ଅସୁରୀକି ବିନାଶ କରିବା ଓ ଶକଟା, ତୃଣା, ବକା, ଅଘ ପ୍ରଭୃତି ଅନେକ ଦୁଷ୍ଟ ଅସୁରମାନଙ୍କୁ ବଧ କରିବା ଏବଂ ପାଞ୍ଚବର୍ଷ ବୟସରେ ଦୁଷ୍ଟ ମହାନାଗ କାଳୀୟକୁ ଦଳନ କରିବା, ସାତବର୍ଷରେ ଗୋବର୍ଦ୍ଧନଗିରିକି ବାମକର କନିଷ୍ଠାଙ୍ଗୁଳରେ ଧାରଣ କରିବା ଏହିସବୁ ଅଦ୍ଭୁତ କାର୍ଯ୍ୟମାନ ତାଙ୍କ ବିନା ଅନ୍ୟ କାହାରି ସାଧ୍ୟ ନୁହେ । ସେହି ମାୟାଧରଙ୍କ ମାୟା ତାଙ୍କୁହିଁ ଜଣା । ଶିବ, ବ୍ରହ୍ମା, ଶେଷ ଓ କୋଟି କୋଟି ଋଷିମାନେ ଯାହାଙ୍କର ଅନ୍ତ ପାଇ ନାହାନ୍ତି, ସାମାନ୍ୟ ମାନବ ତା' ସବୁ କାହୁଁ ଜାଣିପାରିବ କିନ୍ତୁ ଯେ ତାହାଙ୍କର ପ୍ରକୃତ ଭକ୍ତ, ତା' ନିକଟରେ ସେହି ଚିନ୍ତାମଣି ସର୍ବଦାହିଁ ବନ୍ଧି ପଡ଼ିଥାଆନ୍ତି । ତେଣୁ ସେ ଭକ୍ତବତ୍ସଳ, ଭକ୍ତଚିତ୍ତଚୋର ବୋଲି ନାମ ଧାରଣ କରିଅଛନ୍ତି । ସ୍ୱୟଂ ଶ୍ରୀହରି ନିଜ ନିନ୍ଦା ସହିପାରନ୍ତି କିନ୍ତୁ ଭକ୍ତର ନିନ୍ଦା କ୍ଷଣମାତ୍ର ସହିପାରନ୍ତି ନାହିଁ । ସେହିହେତୁ ଭକ୍ତିଦେବୀ-ରାଧାରାଣୀଙ୍କର କଳଙ୍କ ବାଧା ଘୁଞ୍ଚାଇବାଲାଗି ନିଜେ ନନ୍ଦରାଜଭୁବନରେ ମତ୍ତ ହୋଇ, ପୁଣି ବୈଦ୍ୟବେଶଧାରଣପୂର୍ବକ ଯେଉଁ ଅଦ୍ଭୁତ ଘଟଣା ଘଟାଇବାଦ୍ୱାରା ସେହି ଭକ୍ତିରୂପା ଶ୍ରୀମତୀଙ୍କର ସତୀତ୍ୱ ସପ୍ରମାଣ କରିଅଛନ୍ତି, ତାହାହିଁ ଏହି "କଳଙ୍କଭଞ୍ଜନ ନାଟକର ମୂଳ କଥା । ଇତି ।

ଶ୍ରୀ ଶ୍ରୀ ରାଧାଗୋବିନ୍ଦ ରାସଲୀଳା-
ମଣ୍ଡଳୀ — କଟକ

ଲେଖକ
ଶ୍ରୀ ବୈଷ୍ଣବଚରଣ ଦାସ୍ ବାବାଜୀ

# କଳଙ୍କଭଞ୍ଜନ ନାଟକର
## ଲୀଳା ବିନୋଦକାରୀମାନଙ୍କ ପରିଚୟ ।

( ପୁରୁଷଗଣ )

ଶ୍ରୀକୃଷ୍ଣ—ନନ୍ଦରାଜାଙ୍କ ପୁତ୍ରରୂପେ ସ୍ୱୟଂ ଗୋଲୋକପତି ଭଗବାନ ।
ବଳରାମ—ଶ୍ରୀକୃଷ୍ଣଙ୍କ ଭ୍ରାତାରୂପେ ସ୍ୱୟଂ ଅନନ୍ତଦେବ ।
ଶ୍ରୀଦାମ—ଶ୍ରୀରାଧାଙ୍କ ଜ୍ୟେଷ୍ଠ ଭ୍ରାତା ଓ ଶ୍ରୀକୃଷ୍ଣଙ୍କ ସଖା ।
ସୁଦାମ—ବ୍ରଜ ବ୍ରାହ୍ମଣ ବାଳକ ଓ ଶ୍ରୀକୃଷ୍ଣଙ୍କ ସଖା ।
ବସୁଦାମ—ବ୍ରଜ ବାଳକ ଓ ଶ୍ରୀକୃଷ୍ଣଙ୍କ ସଖା ।
ସୁବଳ—ଶ୍ରୀରାଧାଙ୍କ ଖୁଡ଼ୁତାପୁତ୍ର ଭ୍ରାତା ଓ ଶ୍ରୀକୃଷ୍ଣଙ୍କର ପ୍ରିୟନର୍ମ ସଖା
ନନ୍ଦ—ବ୍ରଜରାଜ, ଶ୍ରୀକୃଷ୍ଣଙ୍କ ପିତା ।
ନାରଦ—ବୀଣାବିନୋଦକାରୀ ବ୍ରହ୍ମ ମୁନି ।
କୃଷ୍ଣ ଦାସ—
ବିଷ୍ଣୁ ଦାସ— } ଗୋକୁଳନଗରୀର ପ୍ରଧାନ ବୈଦ୍ୟ ଦ୍ୱୟ ।
ଧନ୍ୱନ୍ତରି ବୈଦ୍ୟ—ଛଦ୍ମବେଶୀ ବୈଦ୍ୟରୂପଧାରୀ ଶ୍ରୀକୃଷ୍ଣ ।

( ସ୍ତ୍ରୀଗଣ )

ଶ୍ରୀରାଧା—ବୃଷଭାନୁରାଜାଙ୍କ କନ୍ୟାରୂପେ ଶ୍ରୀକୃଷ୍ଣଙ୍କ ହ୍ଲାଦିନୀଶକ୍ତି ।
ବୃନ୍ଦା—ଶ୍ରୀରାଧାଙ୍କ ପ୍ରିୟସଖୀ ଓ ଦୂତୀକା ।
ଲଳିତା—ଶ୍ରୀରାଧାଙ୍କ ଅନ୍ତରଙ୍ଗ ସଖୀ ।
ବିଶାଖା—ଶ୍ରୀରାଧାଙ୍କ ପ୍ରିୟନର୍ମ ସଖୀ ।
ଚିତ୍ରା—ଶ୍ରୀରାଧାଙ୍କ ପ୍ରିୟସଖୀ ।
ଯଶୋଦା—ଶ୍ରୀକୃଷ୍ଣଙ୍କ ଜନନୀ ( ନନ୍ଦରାଣୀ ବା ବ୍ରଜେଶ୍ୱରୀ )
ରୋହିଣୀ—ବସୁଦେବଙ୍କ ପତ୍ନୀ ( ବଳରାମଙ୍କ ଜନନୀ )
କମଳା—
ବିମଳା— } ଯଶୋଦା ରାଣୀଙ୍କ ପରିଚାରିକା ଦ୍ୱୟ ।
ଜଟିଳା—ଶ୍ରୀରାଧାଙ୍କ ଶାଶୂ ( ଚନ୍ଦ୍ରସେନର ଜନନୀ )
କୁଟିଳା—ଶ୍ରୀରାଧାଙ୍କ ନଣନ୍ଦ ( ଚନ୍ଦ୍ରସେନ ଭଗିନୀ )
ଯମୁନା—ପୁଣ୍ୟତୋୟା ନଦୀରୂପିଣୀ ସୂର୍ଯ୍ୟତନୟା ।

---

# କଳଙ୍କଭଞ୍ଜନ ନାଟକ ।



## ପ୍ରସ୍ତାବନା ।

( ଅଭିନୟିକାଗ୍ରୀମାନେ ଏକ ଧାଡ଼ିରେ ଠିଆହୋଇ ଦର୍ଶକମାନଙ୍କ-ସମ୍ମୁଖରେ ଅର୍ଘ୍ୟଥାଳ ଧାରଣ ପୂର୍ବକ ବନ୍ଦନା ଗୀତ ଗାନ କରିବେ । )

ଅଜ୍ଞାନ ତିମିରେ ଚକ୍ଷୁ ଅନ୍ଧକାର ଥିଲା ।
ଜ୍ଞାନାଞ୍ଜନ ଦେଇ ଯେହୁ ପ୍ରକାଶ କରିଲ୍ଲ ହେ । ୧ ।

ଏବମ୍ଭୂତ ଶ୍ରୀଗୁରୁ ଚରଣ ତଳେ ଯାଇ ।
ଭକ୍ତିଭରେ ପ୍ରଣମୁଛୁଁ ପୁନଃ ପୁନଃ ହୋଇ ହେ । ୨ ।

କୋଟି ଜନ୍ମାର୍ଜିତ ପୁଣ୍ୟେ ଯେ ଲବ୍ଧ ନ ହୁଏ ।
ଗୁରୁ କୃପା ହେଲେ ସେ ଯେ ଏ ତତ୍ତ୍ୱକୁ ପାଏ ହେ । ୩ ।

ଶିକ୍ଷାଗୁରୁ କୃପାମୟୀ ଶ୍ରୀମତୀ ଯଶୋଦା ।
ମଦନ ମୋହନ ଅଙ୍ଗେ ନିବାସ ଯାହାର ହେ । ୪ ।

ଯାର କୃପାବିନ୍ଦୁ ପାଇ ଅଛି ମତି ଜନ ।
ମୂକ ହୋଇ ରାଧାକୃଷ୍ଣ ଲୀଳା କରେ ଗାନ ହେ । ୫ ।

ସେହୁ ଶିକ୍ଷାଗୁରୁ ପାଦପଦ୍ମେ ଅଷ୍ଟେ କରି ।
ବନ୍ଦନା କରୁଛୁଁ ଅମ୍ଭେ ସର୍ବେ ଅନୁସରି ହେ । ୬ ।

( ୰ଶ୍ରୀଚନ୍ଦନ )



# ପ୍ରଥମ ଅଙ୍କ ।

## ପ୍ରଥମ ଦୃଶ୍ୟ—ନିକୁଞ୍ଜବନ ।

(ଶ୍ରୀରାଧା, ବୃନ୍ଦା, ଲଳିତା, ବିଶାଖା ଓ ଚିତ୍ରା ପ୍ରବେଶ)

ଶ୍ରୀରାଧା—ସଖି ! ଅଜ ଶ୍ରୀକୃଷ୍ଣଚନ୍ଦ୍ର କାହିଁକି କୁଞ୍ଜରେ ନାହାନ୍ତି ?

ବୃନ୍ଦା—ସଖି ! ଶ୍ରୀକୃଷ୍ଣଚନ୍ଦ୍ରଙ୍କ କୁଞ୍ଜକୁ ନ ଆସିଲେ କୁଞ୍ଜର ଶୋଭା ହୁଏନାହିଁ, ନାନାଜାତି ଫୁଲ ଫୁଟି କୁଞ୍ଜବନ ଶୋଭା ପାଉଛି ସତ୍ୟ, କିନ୍ତୁ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିନା ସବୁହିଁ ଅସୁନ୍ଦର ।

ଲଳିତା—ସଖି ! ଅନ୍ଧକାର ହିଁ, ଯାହାର ଯାହା ଭୂଷଣ, ତା ନ ଦେଲେ କଣ ଶୋଭା ହୁଏ ? ସରୋବରର ଶୋଭା ଯେପରି କମଳିନୀ, ମେଘମାଳାର ଶୋଭା ଯେପରି ସୌଦାମିନୀ, ସେହିପରି ଏହି ନିକୁଞ୍ଜର ଶୋଭା ନୀଳକାନ୍ତ ମଣି, ସେହି ନୀଳକାନ୍ତ ମଣିଙ୍କ ଅଭାବରୁ ନିକୁଞ୍ଜବନ ଅନ୍ଧକାର ।

### ଗୀତ ।

( ରାଗ ବୃନ୍ଦାବନ ସାରଙ୍ଗ ତାଳ ଏକ ତାଳି )

ସେହି ନୀଳକାନ୍ତ ମଣି, ଅଭାବରୁ ଗୋ ସଜନୀ
ଏ ନିକୁଞ୍ଜବନ ଅନ୍ଧକାର ।
ଯାହାର ଯାହା ଭୂଷଣ, ସେ ବିନା ସୁନ୍ଦରପଣ,
ଯଥା କମଳିନୀ ସରୋବରରେ ଗୋ, ସଜ୍ଜ ଗୋ,
ଘନକୁ ସୁନ୍ଦର ସୌଦାମିନୀ ।
ସେହିପରି କୁଞ୍ଜଶୋଭା ଶ୍ୟାମ ବଂଶୀପାଣି ଗୋ । ୧ ।

ବିଶାଖା—ସଖି ! ଉଚିତ କହିଲ, ଗଗନର ଶଶୀ ଯେପରି ଅନ୍ଧକାର ନାଶ କରେ, ଆମ୍ଭମାନଙ୍କର ବୃନ୍ଦାବନଶଶୀନ୍ତି ମଧ୍ଯ ଦେହ-ଘର ଅନ୍ଧକାର ନାଶ କରନ୍ତି ।

ଚମ୍ପା—ସଖୀ ! ଗଗନର ଶଶୀ ଅନ୍ଧକାର ନାଶ କରେ ସତ, କିନ୍ତୁ ସେ ବାହ୍ୟିକ ଅନ୍ଧକାର ନାଶ କରେ । ଆମମାନଙ୍କର ଶ୍ୟାମଶଶୀ ବାହ୍ୟିକ ଅନ୍ଧକାର ନାଶ କରନ୍ତି, ଆଉ ମଧ୍ୟ ଅନ୍ତର ଅନ୍ଧକାର ନାଶ କରନ୍ତି ।

ଶ୍ରୀରାଧା—ସଖି ଏ ଗୋ ! ତେବେମାନେ କୁଞ୍ଜକୁ ଅସି ଅନ୍ୟକଥା ଏତେ କାହିଁକି କହୁଛ ? ମୁଁ ଯେଉଁ ସଙ୍କଟରେ କୁଞ୍ଜକୁ ଆସିଛି, ତାର ଉପାୟ କଣ କହ ।

ବୃନ୍ଦା—ତାର ଉପାୟ ? କୃଷ୍ଣଙ୍କର ପାଦପଦ୍ମର ମଧୁ, କୃଷ୍ଣ ଆସିଲେ ତାର ଉପାୟ ହେବ ।

ଶ୍ରୀରାଧା—ବୃନ୍ଦେ ! ମୋର କଣ ସତେ ଏପରି ଭାଗ୍ୟ ହେବ ଯେ, ରାଧାନାଥ କଳଙ୍କିନୀ ରାଧାର କଳଙ୍କ ମୋଚନ କରିବେ ?

## ଗୀତ ।

( କୀର୍ତ୍ତନ ସ୍ୱର )

ସତେ କି ଗୋ ପ୍ରିୟସଖି ଏ ଭାଗ୍ୟ ହୋଇବ ।
କଳଙ୍କିନୀ ରାଧାର ଏ କଳଙ୍କ ଘୁଞ୍ଚିବ ଗୋ ॥
ସତେ ବୃନ୍ଦାବନଶଶୀ ଦେବେ ଦରଶନ ।
କଳଙ୍କିନୀ ଭାର ମୋର କରିବେ ମୋଚନ ଗୋ ॥

ଯେତେବେଳେ ଗଲେ ଅପବାଦ ହୁଅଇ ରଟନା ।
କି କହିବ ସହଚରି ହୃଦର ବେଦନା ଗୋ ॥
ଶାଶୁ ନଣନ୍ଦ ଭର୍ତ୍ସନା ଶୁଣି କରନ୍ତରେ ।
ମଥା ଟେକି ନ ଚାଲଇ ଏ ଗୋପ ଦାଣ୍ଡରେ ଗୋ ॥

ବୃନ୍ଦା—ରାଧେ ! ତମର ପୁଣି କଳଙ୍କ କଅଣ ? ଯେମେନ୍ତ ଗଗନର ଚନ୍ଦ୍ରମା ନୁହଁ ଯେ ତମଠେଇଁ କଳଙ୍କ ରହିବ । ତେମେ ଯେ ବୃନ୍ଦାବନର ଅକଳଙ୍କଶଶୀ, ନଇଲେ କି ଶ୍ୟାମଗଗନରେ ଉଦୟ ହୋଇପାରନ୍ତ ? ସଖି ! ଏପରି କଥା ଆଉ ମୁଖରେ ଆଣନା, ଏ କଥା ଶୁଣିଲେ ମୋ ପ୍ରାଣରେ ବଡ଼ ବ୍ୟଥା ପାଉଛ ।

ଗୀତ

( ମନେ ପଡ଼ୁଛି ସହି ସେହି ଚନ୍ଦ୍ରମାମ୍ ର ବୃତ୍ତେ । )

ରାଧେ କହନା ଗୋ ! ( ମୋ ରାଧେ ! ) କହନା ଗୋ ।
ଏପରି କଥା ତୁ ଆଉ କହନା ଗୋ !
ଚନ୍ଦ୍ରମାବଦଦୀ ମୋର ହୃଦୟ ଦହନା ଗୋ(ରାଧେ)କହନା ଗୋ ।ପଦ।
ତେମେ କଳଙ୍କିନୀ, ହେବ ଗୋ କୃଷ୍ଣ ଭୁବନ !
ଅସହଣୀ କଣ୍ଠ, ବାଣୀ ମରମେ ଦହନା ( ରାଧେ ) କହନା ଗୋ ।୧।
ଏ ଗୋପେ ସତୀ ସାଧବୀ, ମାଧବ ପ୍ରାଣବାନ୍ଧବୀ ।
ରାଧା ବିନା କିଏ ଅଛି ଅଗୋ ସ୍ନେହସେନା (ରାଧେ) କହନା ଗୋ।୨।

ଶ୍ରୀରାଧା—ସେ ଯାହହେଉ ବୃନ୍ଦେ ! ପ୍ରାଣନାଥ ଏବେ କୁଞ୍ଜକୁ ଆସୁନାହାନ୍ତି କାହିଁକି ? ତାଙ୍କର ଅସିବା ଡେରି ଦେଖି ତ୍ରିଭୁବନ ଯାକ ଅନ୍ଧକାର ଦେଖୁଚ ।

ଗୀତ

[ ଭଣ ବୃତ୍ତେ ]।

କାହିଁକି ଗୋ ପ୍ରିୟତମ୍ଭ ନଇଲେ ମୋହନ ।
ଦିନ ଅବସାନ ଦେଖି ମନ ଉଚ୍ଚାଟନ ଗୋ ।
ତାଙ୍କ ବିନେ ଅନ୍ଧକାର ଦିଶେ ତ୍ରିଭୁବନ ।
ସଖି ଗୋ ନିମିଷେ ଧରି ନ ପାରେ ପରାଣ ।

ଭାସେ ସଦା ଅଶ୍ରୁ ନୀରେ ସଖି ମୋ ବଦନ ।
ଚକ୍ରବର୍ତ୍ତୀର ଲାଗି ହୃଦ ହେଉଛୁ ଦହନ ଗୋ ॥
ବଳମ୍ବରୁ ବଢ଼ଇଛ ହେଲ୍‌ଗ ଏ ଜୀବନ ।
ଦେଖାଅ ମୋ ନୀଳମଣି ନୟନରଞ୍ଜନ ଗୋ ॥

ବୃନ୍ଦା—ଶଶୀବଦନ ! କମଳନୀବ ତ୍ୟାଗ କରି ଅଳ କେତେକ୍ଷଣ ସ୍ଥିର ହୋଇ ରହିପାରିବ ? ତାଙ୍କର ଆସିବା ଆଉ ବିଳମ୍ବ ନାହିଁ, (ନେପଥ୍ୟ ଅଡ଼କୁ ଚାହିଁଦେଇ) ଏହି ଦେଖ ଦେଖ,ମେଘ ଖୋଜୁ ଖୋଜୁ ଆକାଶରେ ପାଣି ।

( ଗୀତ ଗାଇ ଗାଇ ଶ୍ରୀକୃଷ୍ଣଙ୍କର ପ୍ରବେଶ )

ଶ୍ରୀକୃଷ୍ଣ— ଗୀତ

[ କୀର୍ତ୍ତନ ସ୍ୱର ]

ବାଜ ବାଜ ବାଜ ମୋର ମୋହନ ମୁରଲୀ ।
ବୃଷଭାନୁ ସୁତା ସ୍ୱଧେ ଶ୍ରୀଚନ୍ଦ୍ରଶେଖରୀ ବୋଲି ॥
( ବାଜରେ ବାଜରେ ) ଜୟ ଗୁଧେ, ଗୁଧେ ବୋଲି ବଂଶୀ
( ବାଜରେ ବାଜରେ )
ଗୁଇ ଚନ୍ଦ୍ରୋଦନୀ ବୋଲି ବଂଶୀ ( ବାଜରେ ବାଜରେ ) ॥

ବୃନ୍ଦା—( ଶ୍ରୀକୃଷ୍ଣଙ୍କୁ ଦେଖି ପଦ୍ମକୁ ଲକ୍ଷକରି ) କମଳନୀ ! ଅଳର ନାମ କହୁ କହୁ ଅଳ ଅସି ଉପସ୍ଥିତ, ଏବେ ମକରନ୍ଦ ଦେଇ ସୁଖୀ କର ।

ଗୀତ

[ କୀର୍ତ୍ତନ ବୃତ୍ତେ ]

( ଅଗୋ ) "ପଦ୍ମିନୀ ଗୋ ଅଳ ତୋର ହେଲାଣି ହାଜର ।
ଏବେ ମକରନ୍ଦ ଦେଇ ତାକୁ ସୁଖୀକର ଗୋ" । ୧ ॥

ଦେଖ କେତେ ଫୁଟିଲ କୁନ୍ଦ ତୋ ମଧୁ ବନ୍ଧନେ ।
ଅଥିର ହୋଇଛନ୍ତି ଭୃଙ୍ଗ ସୁଖ ନାହିଁ ମନେ ଗୋ । ୨ ।

ଶ୍ରୀରାଧା—ବୃନ୍ଦେ ! ତୋତେ ଯେତେ କହ, ଆଜ ଯଦି ଶ୍ରୀଧର କାଳ କିମ୍ବା ନାମ ଘୁଞ୍ଚି, ତେବେ ରାଧା ବ୍ରଜରେ ରହିବ, ନଇଲେ ଯମୁନାରେ ଯାଇଁ ଜୀବନ ହରାଇବାର ନିଶ୍ଚୟ ।

ଗୀତ

( ପ୍ରଥ· ଧନ୍ୟ ସଖୀ କର ବୃତ୍ତେ )

ଯେତେ ବୁଝାଇଲେ ସହି !
ଅବୋଧ ମନ ମୋ ବୋଧ ନୁହଇ ଗୋ !
ଅପବାଦ ହୃଦ ଦଏ ଦହି, ସଜନି ଗୋ । ୧ ।
ଏ କଳଙ୍କ ବାଧା ମୋର ।
ଯେବେ ନ ଘୁଞ୍ଚିବ ଅଙ୍ଗ ନ କର ଗୋ ।
ନଷ୍ଟେଁ ପ୍ରାଣ ହାରିବ ଏଥର, ସଜନି ଗୋ । ୨ ।
ଜାଣିଥାଅ ସଙ୍ଗ ସଖି !
ଏ କାର୍ଯ୍ୟ ଏ ସ୍ଥିର ପରାଣ ରଖି ଗୋ !
ଯମ ଭଗିନୀ ଏଣିକି ସାକ୍ଷୀ, ସଜନି ଗୋ । ୩ ।

( ଅଧୋବଦନେ ଅଶ୍ରୁ ତ୍ୟାଗ )

ଶ୍ରୀକୃଷ୍ଣ—ବୃନ୍ଦେ ! ତମ ପ୍ରିୟସଖୀ ରାଧା ନିକୁଞ୍ଜରେ କିରୂପ ମନରେ ବସିଛନ୍ତି କାହିଁକି ?

ଗୀତ

( ଅଗୋ ମଧୁରେ ବାଳ ବଂଶୀଧାରୀ-ବୃତ୍ତେ )

କହ କହ ବୃନ୍ଦେ କାହିଁ ପାଇଁ ଆଜ କଟଶାସ୍ତ୍ର ବରସମନା ।
କେଉଁ ଦୁଃଖ ତାଙ୍କ ମରମେ ରହିଛି ତହିଁ ପାଇଁ ଏ ଯତନା ।
ଅଗୋ ବନେଶ୍ୱର ! କାନ୍ଦୁଛନ୍ତି କଣ୍ଠ ସେ ଏପରି । ୧ ।

ବୃନ୍ଦା—ସେ କଥା ମୁଁ କହିବା ନାହିଁ, ତାଙ୍କୁ ପଚାର ।

ଶ୍ରୀକୃଷ୍ଣ—( ରାଧାଙ୍କ ପ୍ରତି )

ଗୀତ ।

( କୁଞ୍ଜବନରେ—ବୃନ୍ଦେ )

କହ ମୋହନ !, କାହିଁପାଇଁ ଏତେ ବିରସ ।

ଦେଖି ଦେଖି ଶୁଖିଯାଉଛି ତ ସଜ କଞ୍ଜ ମୁଖ ସରସ । ଘୋଷା ।

ଗଣ୍ଡେ ମଣ୍ଡି ପଦ୍ମପାଣି, କହିଁ ଅଛୁ ତ ଧରଣୀ,

ନୟନୁ ଲୋତକ ଶ୍ରେଣୀ, ମୁଖ ଶୀତଶୋଭା ମଣି,

ଶ୍ରୀମୁଖରେ ନାହିଁ ହରଷ । ୧ ।

ବୃନ୍ଦା—ମୋହନ ! ସେ କଥା ରାଧା କଅଣ କହିବେ ? ଆମମାନଙ୍କ ମୁହିଁରୁ ତ କଥା ଆସୁ ନାହିଁ, ଏ ଦୁଃଖ କଅଣ କହିହେବ ପରେ ?

ଶ୍ରୀକୃଷ୍ଣ—(ରାଧାଙ୍କ ପ୍ରତି) କମଳାକ୍ଷି ! ଅନ୍ୟ ଦିନ ତମର ଯେଉଁ ଭାବ, ଆଜି ସେ ଭାବର ଭାବାନ୍ତର କାହିଁକି ? ଆନନ୍ଦଦାୟିନି ! ଆନନ୍ଦ ସମୟରେ ନିରାନନ୍ଦ କାହିଁକି ? ପୂର୍ଣ୍ଣ ଚନ୍ଦ୍ର ମୁଖମଣ୍ଡଳରେ ମଳିନତା ରାହୁର ପ୍ରକାଶ କି ହେଉଛି ? ପ୍ରାଣେଶ୍ୱରୀ ଗୋ ! କହ କହ, ମନରେ କି ଦୁଃଖ କହ ?

ଗୀତ ।

[ କୀର୍ତ୍ତନ ସ୍ୱର ]

କି ଭାବେ ଭାବିନୀ ଆଜି ଦୁଃଖେ ଅଛୁ ବସି ।

ମଳିନ ଦିଶୁଛି କେଣେ ମୁଖ ପୂର୍ଣ୍ଣଶଶୀ ଗୋ । ୧ ।

ନଳିନ ନୟନୁ ନୀର ବହେ ନିରନ୍ତର ।

ଶୁଖିଅଛି ବିମ୍ବାଧର କମ୍ପେ କଳେବର ଗୋ । ୨ ।

ଏ ଲାଗି ରେ ପ୍ରାଣଧନ ହୋଇଛୁ ମଉନ।
କାହିଁପାଇଁ ନ ଭାଷୁ ତୋ ମଧୁର ବଚନ ଗୋ । ୩ ।

ଶ୍ରୀରାଧା—ରାଧାନାଥ ! ଆପଣ ଯାର ପ୍ରାଣବଲ୍ଲଭ, ତାର ପୁଣି ଦୁଃଖ କଅଣ ? ତେବେ ଏ ହତଭାଗିନୀ ରାଧା ମନରେ ଗୋଟିଏ ଗୁରୁତର ଦୁଃଖ ଅଛି । ତୁମ୍ଭଙ୍କୁ ଅପେକ୍ଷା କଲି ବୋଲି କଅଣ ତାର ପ୍ରତିଫଳ ଏହି ? ପ୍ରଭୁ ! ମୋର ଏ ଦୁଃଖ ସାମାନ୍ୟ ଦୁଃଖ ନୁହେ ।

ଶ୍ରୀକୃଷ୍ଣ—ପ୍ରାଣାଧିକେ ! କି ଦୁଃଖ କହ ? ଅବଶ୍ୟ ମୁଁ ତା ଦୂର କରିବି ।

ଶ୍ରୀରାଧା—ହରି ହେ ! ମୋର ଏହିମାତ୍ର ବଡ଼ ଦୁଃଖ, ଯେ ଆପଣଙ୍କ ପାଦପଦ୍ମକୁ ଭାବନା କରି ବ୍ରହ୍ମା ବ୍ରହ୍ମପଦ, ଇନ୍ଦ୍ର ଇନ୍ଦ୍ରପଦ ଲାଭକରିଅଛନ୍ତି, ଦେବାଧିଦେବ ମହାଦେବ ଆପଣଙ୍କ ଶ୍ରୀପଦ ଭାବନା ବଳରେ ମୃତ୍ୟୁକୁ ଜୟ କରି ମୃତ୍ୟୁଞ୍ଜୟ ନାମକୁ ଧାରଣ କରିଅଛନ୍ତି, ଧ୍ରୁବ ଏହି ପଦ ଭାବି ଧ୍ରୁବେ ବାସ କରିଅଛନ୍ତି, ପ୍ରହ୍ଲାଦ ଏହି ଚରଣ ଚିନ୍ତା କରି ନାନା ବିପଦରୁ ରକ୍ଷା ପାଇଅଛନ୍ତି; ଏବେ ରାଧା ସେହି ଅଭୟ ପାଦପଦ୍ମରେ ଦାସୀ ହୋଇ ସେହି ପଦସେବାକରିବାରୁ ରାଧାର ନାମ ହେଲା କୃଷ୍ଣ-କଳଙ୍କିନୀ, ଏ କଣ ରାଧାର କମ ଦୁଃଖ ?

ଗୀତ ।

( କୃଷ୍ଣ ନାମ ଅଙ୍ଗଠାରୁ—ବୃରେ )

କେତେ ବା କାହାର ଦୁଃଖ ହରି ନାହିଁ
ଦୁଃଖୀଜନ ଚିନ୍ତାମଣି ହେ ।
( ଏ ) ରାଧା ତୁମ୍ଭ ଲାଗି, ହେଲା ମନ୍ଦ ଭାଗୀ;
ଚିତ୍ତଚୋର ବଂଶୀପାଣି ହେ !

( କେହୁ ) ମୋ ପରି ନାହିଁ ଦୁଃଖିନୀ ।
ବ୍ରଜେ ବୋଲାଇଲୁ କଳଙ୍କିନୀ ହେ । ୧ ।

ଶ୍ରୀକୃଷ୍ଣ—ପ୍ରାଣାଧିକେ ! ତମର ଅଉ କଳଙ୍କ କଅଣ ? ତୁମ୍ଭେ ଯେ ଶ୍ରୀବୃନ୍ଦାବନର ଅକଳଙ୍କ-ଚନ୍ଦ୍ରମା, ମୁଁ ଯାହାକୁ ଗଳା-ହାର କରି ହୃଦୟରେ ଧାରଣ କରିଚି, ତାର କ କଳଙ୍କ-ମାଳା ପିନ୍ଧିବା ସମ୍ଭବ ? ଲୋକେ ଚନ୍ଦ୍ରଙ୍କୁ କଳଙ୍କି ବୋଲି ଘୃଣା କରନ୍ତି, କିନ୍ତୁ ମହାଦେବ ସେହି କଳଙ୍କ ଚନ୍ଦ୍ରଙ୍କୁ ଭଲପାଇ ମସ୍ତକରେ ବହି ଅଛନ୍ତି । ପ୍ରିୟେ ! ସାମାନ୍ୟ ବ୍ୟକ୍ତିମାନେହିଁ ତୁମ୍ଭଙ୍କୁ ସାମାନ୍ୟ ଜ୍ଞାନ କରନ୍ତି, ତତ୍ତ୍ୱଜ୍ଞାନ ଭିନ୍ନ ତୁମ୍ଭର ତତ୍ତ୍ୱ କିଏ ବୁଝିପାରିବ କହ ଧନ ? ଅନ୍ଧକାରରେ ଅନ୍ଧହସ୍ତେ ଅମୂଲ୍ୟ ମଣି ଦେଲେ ସେ କଣ ଆନନ୍ଦ ହୁଏ ? ମୋର ଶିର ଭୂଷଣ ଅମୂଲ୍ୟ ଧନ, ଏକମାତ୍ର ରାଧା; ତୁଳସୀର ମାନ କଣ କୁକୁର ଜାଣେ ପାରେ ? ବ୍ୟାଧ କଣ ଶୁକପକ୍ଷୀର ମର୍ମ୍ମ ବୁଝେ ? ତୁମ୍ଭେ ଯେ ବ୍ରହ୍ମରୂପିଣୀ, ଗୋଲୋକ ତ୍ୟାଗ କରି ଗୋପିନୀ ହୋଇଚ । ଭ୍ରାନ୍ତଜନମାନେ ତା' ଉପରି ଜାଣିବେ ? ପ୍ରିୟେ ! କାହିଁକି ବୃଥା କଳଙ୍କରେ ଭୟ କରୁଚ ?

ଗୀତ ।

( ଜାତିନ ସ୍ୱର )

ବୃଥା କଳଙ୍କରେ ଭୟ କେଣେ ଗୋ ପ୍ରହାସୀ ।
ତୁମ୍ଭେ ଯେ ବୃନ୍ଦାବନରେ ଅକଳଙ୍କ ଶଶୀ ଗୋ ।
ତୁମ୍ଭେ ଗୋ ବ୍ରଜମୋହନ ! ଗୋଲୋକ ତେଜ ଗୋପିନୀ,
ମହାଶକ୍ତିମୟି ! ରାଧେ ଭକ୍ତି ସୁଧାରାଶି ଗୋ । ୧ ।

ଯାହାହେଉ ପ୍ରିୟେ ! ତୁମ୍ଭ ନିକଟରେ ସତ୍ୟ କରୁଛି, ଆଜି ମୁଁ ତୁମ୍ଭର କଳଙ୍କିନୀ ନାମ ଘୁଞ୍ଚାଇବି, ଏବେ ମୁଁ ଗୋଚାରଣ ନିମନ୍ତେ ଗୋଷ୍ଠକୁ ଯାଉଛି, ତୁମ୍ଭେ ପ୍ରଫୁଲ୍ଲଚିତ୍ତରେ ସଖୀମାନଙ୍କ ସଙ୍ଗେ ଗୃହକୁ ଗମନ କର । ( ଶ୍ରୀକୃଷ୍ଣଙ୍କ ପ୍ରସ୍ଥାନ )

ଶ୍ରୀରାଧା — ସଖିଗଣ ! ଚାଲ ଘରକୁ ଯିବା ।

ସଖୀଗଣ — ଆସ ଆସ ।

ଗୀତ ।

(କାଢ୍ୟାଯିନୀ ପୂଜା ପଦର ବୃତ୍ତେ)

ଆସ ଗୋ ଜୀବନ ଧନ ! କାହିଁ ପାଇଁ ଅଛ ବିରସ ମନ ଗୋ ।

ନିଶ୍ଚେ କଳଙ୍କ ହେବ ମୋଚନ କହେ ଗୋପୀ ଗୋ । ୧ ।

ପଟ ପରିବର୍ତ୍ତନ ।



## ପ୍ରଥମ ଅଙ୍କ

### ଦ୍ୱିତୀୟ ଦୃଶ୍ୟ — ନନ୍ଦରାଜ ଭବନ ।

[ ଯଶୋଦା ଓ ରୋହିଣୀ ଉପବେଶନପୂର୍ବକ କଥୋପକଥନ ]

ଯଶୋଦା — ଭଉଣି ! କଳାକାହ୍ନୁ ମୋର ଏପର୍ଯ୍ୟନ୍ତ ଆସିଲେ ନାହିଁ କାହିଁକି ? ତା'ର ଆସିବା ବିଳମ୍ବ ଦେଖି ମୁଁ ଚଉଦିଗ ଅନ୍ଧକାର ଦେଖୁଛି ।

ରୋହିଣୀ — ଭଉଣି ! ତମେ କାହ୍ନୁଗତପ୍ରାଣା କି ନା ? ସେଥିପାଇଁ ତାଙ୍କୁ କ୍ଷଣେ ନ ଦେଖିଲେ, ଅସ୍ଥିର ହୁଅ ।

ଯଶୋଦା — ଭଉଣି ! ଅସ୍ଥିର ହୁଏ ସତ, କିନ୍ତୁ ଆଜି ଯେପରି ଅସ୍ଥିର ହେଉଛି, ଏପରି କେବେ କେବେ ହୋଇ ନାହିଁ, ସଖି !

ଆଜି କାହିଁକି ମୋ ପ୍ରାଣରେ କୌଣସି ଉଦ୍‌ବେଗ ଜାତ ହେଉଛି, ଚକ୍ଷୁଜଳରେ ବକ୍ଷ ଭାସିଯାଉଛି, କ୍ଷଣକ୍ଷଣ ଦକ୍ଷିଣନୟନ ନୃତ୍ୟ କରୁଛି, ଭଉଣି ! ଏହା, ଶୁଭଲକ୍ଷଣ ନୁହେ, ଆଜି ମୋର କପାଳେ ଯେ, କଅଣ ଘଟିବ ତାହା ବୁଝିପାରୁନାହିଁ; କେଜାଣି ମୋ କାହ୍ନୁର କଣ ଅସୁସ୍ଥ ହେଇଥାଏ । ଭଉଣି ! କପାଳର ମନ୍ଦ, ନେତ୍ରେ ମୋ ଗୋପାଳଙ୍କୁ ପଦେ ପଦେ ସନ୍ଦେହ ହୁଏ ।

ରୋହିଣୀ—ଭଉଣି ! ସତ, ସେ କଥା କଣ କହିବାକୁ ଅଛି ? ଗୋପାଳର ଅସୁସ୍ଥ ହେବ କାହିଁକି ? ଗୋପାଳ ଏହିକ୍ଷଣି ସନ୍ତୋଷରେ ଆସି ତମ କୋଳରେ ବସି ହସି ହସି ଲବଣୀ ଖାଇବ ।

(ବନ୍ଧୁ ସଙ୍ଗରେ ଶ୍ରୀକୃଷ୍ଣଙ୍କର ପ୍ରବେଶ)

ରୋହିଣୀ—ଭଉଣି ! କାହ୍ନୁ କାହ୍ନୁ ବୋଲି ବାଇଆଣୀ ହେଉଥିଲ ସେ ଏହି ଦେଖ, ତମ ଜୀବନସମ୍ବଳ ଆସିଲାଣି ।

ଯଶୋଦା—ବାପରେ ! ଏତେ ଉଚ୍ଚ କାହିଁକି ? ଅଭାଗିନୀ ମାଆକୁ ଏତେ କନ୍ଦାଇ କଣ ସୁଖ ଲଭୁଛୁ ? ମୁଁ ତୋର ବଦନ ଦେଖି କେତେ ଯେ ଭାବୁଥିଲି, ତା ଆଉ ତୋତେ କଅଣ କହିବି ? ନୀଳମଣି ରେ ! ଆଜି କାହିଁକି ଏତେ ଡେରି କଲୁ ? ଧନମାଳ ! ଇଏ କଅଣ ? ଆଜି ତୋର ଚନ୍ଦ୍ରମୁଖଟି ଶୁଖାଇଦେଇଛୁ କାହିଁକି ? ଅଶ୍ରୁ ଧାର ଧାର ହୋଇ ଆଖିରୁ ଲୁହ ବହିଯାଉଛି କାହିଁକି ? ବାପରେ ! ହସ ହସ ମୁଖରେ ଆଜି ମୋତେ ମା, ଆ, ବୋଲି ଡାକୁନାହୁଁ କାହିଁକି ? ଆଜି ତୋତେ କଣ କିଏ କହିଛି କି ? ଧନ ରେ ! ମୋତେ ଫିଟେଇ ଦେଖିଲ କହ ?

କଳାକାଣିକ ରେ ! ତୋର ଏ ଅବସ୍ଥା ଦେଖି ମୋର
ହୃଦୟ ଫାଟିଯାଉଛି, ଅହାରେ ଅମୂଲ୍ୟନିଧି ! କେତେବେଳୁଁ
ତୋତେ କୋଳରେ ବସାଇ ନାହିଁ, ମା, ଅ, ବୋଲି
କହି ଥରେ ମୋ କୋଳକୁ ଅ ବାପ !

ଗୀତ ।

( ଝୁଲ ଝୁଲ ଅଯୁତ ନାଟୁଅ ଗାଳହଣି ବୃତ୍ତେ )

କୋଳକୁ ମୋ ଅସ ରେ ସଙ୍ଗାଳି ନୀଳମଣିହ ।
ତୋ ବିନା କେ ମାଅ ବୋଲି ( ଏ ସଂସାରେ ମୋତେ ) ଡ଼ାକିବାକୁ ନାହିଁହ ।

ଯେତେଣ ନ ଦେଖୁଲେ ଧନ, ଅକୁଳ ହୁଏ ଜୀବନ,
( ମୋର ହୃଦ ସମ୍ପଦ ! )
ତଦ କାହିଁ ଥିଲୁ ଧନ, ଶୁଖିଛି କମ୍ପା ବଦନ—
କଣୀହ ରେ ମୋ ନୀଳଦାଣି ॥

ଅସ ଦୁଃଖପାରୋୟା ମୋ ନୟନତାର୍,
ଦୁଃଖିନୀ ଜୀବନଧନ ଅମୂଲ୍ୟପସରା,
ଅସ ରେ, ଅସ ରେ, ମୋ ନୀଳରତନମଣି, ଅସ ରେ ଅସ ରେ ।
ଦୁଃଖିନୀ ମାତା କୋଳକୁ ଅସ ରେ, ଅସ ରେ, । ୧ ।

ଶ୍ରୀକୃଷ୍ଣ—ମା ! ମୋତେ କେହି କଷ୍ଟ କହ ନାହିଁ, ଆଜ ମୋର ଦେହ
ଭଲ ଲାଗୁ ନାହିଁ, ଏଣୁ ସୁବଳକୁ ଗୋଚାରଣ ଭାର ଦେଇ
ତୋ ପାଖକୁ ଅସିଲି, ଖରାରେ ବୁଲି ବୁଲି ମୁଣ୍ଡ ବ୍ୟଥା
ହେଉଛି, ଛାତିକି, ଦେହଯାକ ଝିମି ଝିମି ହେଇ ଯାଉଛି । ଆଉ
ବେଳକୁବେଳ ଦାଳ୍ୟ ଲାଗୁଛି, ଅଜ ମୋର ଖାଇବାକୁ
ଇଚ୍ଛା ନାହିଁ, ଚଞ୍ଚଳ ଶଯ୍ୟା କରଦେ, ମୁଁ ଶୟନ କରିବି ।
( ଏହା କହି ମୂର୍ଚ୍ଛା ହେବାର ଅଭିନୟ )

ଯଶୋଦା—ଭଗବାନ୍ ! ଇଏ କଣ ହେଲା, ଇଏ କି ସର୍ବନାଶ ହେଲା ? ଆଜମଣ ମୋର ଦେହ କଅଣ ହେଉଛି କହୁଁ କହୁଁ ଚେତା ହରାଇଦେଲ । ଏହିକ୍ଷଣି ମା, ମା, ବୋଲି ଡାକୁ-ଥିଲ, ଅହା ! ଇଏ କି ଦଶା, ମୁଁ ଏବେ କଅଣ କରିବିଟି ? ଦଇବ ରେ ! ବୃଦ୍ଧକାଳରେ ପୁନ ଦେଇ ଏଇ ଦୁଃଖ ଦେଖାଉଚୁ ? ପ୍ରାଣଧନକୁ ମୋର ଭୂମିଶୟନ ଦେଖି ମୋ ହୃଦୁରୁ ପ୍ରାଣ ଛୁଟିଯାଉଚି, ଅମୂଲ୍ୟନିଧି ରେ ! ତୋ ମନରେ କଣ ଏଇଆ ଥିଲା ?

ଗୀତ

[ ରଣିପୁର ଛନ୍ଦ ବୃତ୍ତେ ]

ଆହା ମୋ ଅମୂଲ୍ୟନିଧି ରେ ! ଦୁଃଖିର ସଙ୍ଗାଳି ।
ଏହା କି ତୋ ମନେ ଥିଲା ରେ, ବାପ ଧନମାଳି ॥୧॥
କେତେ ବାର ବ୍ରତ କରି ରେ, ପାଇଥିଲି ତୋତେ ।
ଅଭାଗିନୀ ଜନନୀକି ରେ, ମୂର୍ଛିଲୁ କେମନ୍ତେ ॥୨॥
ମାଆ, ମାଆ; ବୋଲି ଆଉ ରେ, ଡାକିଲୁ ତ ନାହିଁ ।
ଚେତନା ହଜାଇ ଦେଲୁ ରେ, ଏବେ କାହିଁ ପାଇଁ ॥୩॥
ହାୟ ମୁଁ କେଣିକି ଯିବି କି ବୁଦ୍ଧି କରିବି ।
ଫାଟି ଯାଉଅଛି ଛାତିରେ ମୋର ନୀଳଛବି ॥୪॥

( ଧୈର୍ଯ୍ୟହୀନା ହେଲେ )

ରୋହିଣୀ—ଯଶୋଦେ ! ଏପରି ଅଧୈର୍ଯ୍ୟ ହୋଇ ପଡ଼ୁଚ କାହିଁକି ? ଏଇନେ କାହ୍ନୁ ଉଠି ମାଆ, ମାଆ; ବୋଲି ତମ କୋଳରେ ବସିବ, ଗାଈ ଚରେଇ ଚରେଇ ହାଲିଆ ହୋଇପଡ଼ି ଥିବାରୁ ଏପରି ଜ୍ଞାନଶୂନ୍ୟ ହୋଇ ପଡ଼ିଚି; କାନ୍ଦନା କିଛି ଭୟ କର ନା, ତା'ର ଦେହ ସେପରି ସୁସ୍ଥ ହେବ

ସେ ଉପାୟ କର, କାନ୍ଦିଲେ ତ ଭଲ ନୁହେଁ, ଯଶୋଦେ !
ତୁମ୍ଭଙ୍କୁ ମୋ ପ୍ରଣ, ତୁନି ହୁଅ ( ଅଶ୍ରୁ ପୋଛି ଦେବା )

ଗୀତ ।

( ଅଜ୍ଞାନ ତଟିରେ—ବୃତ୍ତେ )

ତୁନିହୁଅ ଗୋ ଯଶୋଦେ ବସ ଧୈର୍ଯ୍ୟଧରି ।
ସାମାନ୍ୟ କଥାରେ ସଖି ନ ହୁଅ ଏପରି ଗୋ ॥
ଏହିକ୍ଷଣି ଉଠିବ ଗୋ ନୀଳମଣି ପୁନା ।
ତୁମ୍ଭଙ୍କୁ ମୋପ୍ରାଣ ସଖି ନହ ଜ୍ଞାନଶୂନ୍ୟା ଗୋ ।

ଯଶୋଦା—ଭଉଣି ! ଆଉ କଣ ସତେ କଳାକାହ୍ନୁ ମୋତେ ମାଆ-
ବୋଲି ଡାକିବ ? ସତେ କଣ ମୋ ଗୋପାଳର ଚନ୍ଦ୍ର
ମୁଖରେ ମଧୁରହାସ ଦେଖିବି ? ଅହା ! ଧନ ତ ମୋର
ଆଖି ଡୋଳା ଯୋଡ଼ିକ ଲେଉଟେଇ ଦେଇଛି, ଇସ୍ତା
ଦେଖି ତ ମୋ ମୂର୍ଚ୍ଛନା ଫାଟିଯାଉଛି । ହା ରେ ଦଇବ !
ମୋ କପାଳେ କଣ ଏଇସ୍ତା ଥିଲା ? କଳାମାଣିକ ରେ !
ଉଠ, ଉଠିଲୁ ବାପ ! ଏ ମନ୍ଦଭାଗିନୀ ମାଆ ଯେ ତୋର
ଏତେ ବିକଳ ହେଇ କାନ୍ଦୁଛି, ତା'କଣ ଶୁଣିବୁ ନାହିଁ ?
ବାପ ! ଦୁଃଖିଧନ ରେ ! ଆଜ କଥା କହୁନାହୁଁ କାହିଁକି ?
ତୋ'ର ଦୁଃଖିନୀ ମାଆକୁ ମୂର୍ଚ୍ଛି ଦେଇ କେଉଁଣେ ନିଶ୍ଚିନ୍ତ
ହେଲୁ ଧନ !, ରେ ନିଦାରୁଣ ଯମ ! କେଉଁଠି ଅଛୁ,
ତଞ୍ଚଳ ମୋତେ ନେଇ ଯା । ( କ୍ରନ୍ଦନ ସ୍ୱରେ )

ଗୀତ ।

( କଳାମାଣକ—ବୃତ୍ତେ )

ଅହା ମୋ ଦୁଃଖି ସଙ୍ଗାଳ ରଙ୍କୁଣୀ ରତନ ।
କାହିଁକି ଶୁଖାଇ ଦେଲୁ ତୋ ଚନ୍ଦ୍ରବଦନ ॥
( ମୋ ) ହୃଦ ରତନ ରେ ! ।୧ ।

ତ ମନେ ଭାବୁଛୁ ବାପ ଲେଉଟାଇ ଅଣି ।
ଫାଟୁଯାଉଛି ମୁଁ ନା ହୋଇ ଦଶା ଦେଖି ।
( ମୋ ) ଜୀବ ଜୀବନ ରେ ! ।୨।
ହେଲୁ ତ ନିଷ୍ଠୁର ଛାଡ଼ି ଅଭାଗୀ ମାତାକୁ ।
କାହିଁପାଇଁ ନ କହୁ ତୋ ଦରୁଣ କଥାକୁ ।
ନେତ୍ର ଅଞ୍ଜନ ରେ ! । ୩ ।
ହା ହା ରେ ଦାରୁଣ ବିଧି ତ ବଜ୍ର କଲୁ ?
ଏ ବୃଦ୍ଧ ବୟସେ ପୁତ୍ର ଦେଇ ହରି ନେଲୁ ।
ମନ୍ଦ ବିଧାତା ରେ ! । ୪ ।
ଏହା ଯା ଦେଖିଲି ମୋତେ ନୋହିଲା ମରଣ ।
କାହିଁ ହଜାଇ ବସିଲି ମୋ ଅମୂଲ୍ୟ ଧନ ।
ମନ୍ଦ କପାଳ ରେ ! । ୫ ।

( କାତର ଭାବେ ଅଶ୍ରୁ ତ୍ୟାଗ )



ରୋହିଣୀ—ଯଶୋଦେ ! ବିପଦ ସମୟରେ ଏତେ କାତର ହେବା ଉଚିତ ନୁହେ, ବିପତ୍ତିବେଳେ ଯେତେ ଧୈର୍ଯ୍ୟ ଧରିବ ସେତେ ଭଲ, କାନ୍ଦିଲେ ତ କାହୁର ଦେହ ଭଲ ହେବ ନାହିଁ, ଯେପରି ତ ପୁଅ ସଚେତ ହେବ ତା'ର ଚେଷ୍ଟା କର । ମହାରାଜା ନନ୍ଦ, ଉପନନ୍ଦଙ୍କ ପାଖକୁ କହିପଠାଅ, ବଳରାମଙ୍କୁ ଡକାଅ, ସେମାନେ ଆସିଲେ କିଛି ନା କିଛି ଉପାୟ କରିବେ ।

ଯଶୋଦା—ଭଉଣି ! ମୁଁ ନୀଳମଣିକି ଅଜ୍ଞାନ ଦେଖି ମୋତେ ବୁଦ୍ଧି ଦିଶୁନାହିଁ, ଏଥିନେ ତମେ ମୋର ଏକମାତ୍ର ବଳ,

ବୃଦ୍ଧି, ଭରସା, ଯେପରି ପୁଅ ମୋର ଭଲ ହେବ ତା'କର,
ଏବେ ବଳଙ୍ଗମକୁ ଡ଼ାକି ଅଣ, ସେ ଟିତାଙ୍କୁ ଡ଼ାକିଅଣୁ !

ନେପଥ୍ୟେ—ଯଶୋଦେ ! ଧୈର୍ଯ୍ୟ ଧର, ମୁଁ ଯାଉଛି; ତେବେ କାହ୍ନୁକୁ
ଛଡ଼ି କୁଆଡ଼େ ଯାଅ ନା !

[ ଏହା କହି ପ୍ରସ୍ଥାନ ]



( କମଳା, ବିମଳା ପ୍ରତିବେଶୀ ଦୁହିଙ୍କ ପ୍ରବେଶ )

କମଳା—( ସ୍ୱଗତଃ ) ଓଃ କି ସର୍ବନାଶ ! ପୁଅ ତ ଅଉ ପୁଅ ହୋଇ
ନାହିଁ ! ଇନ୍ଦୀବରମଣି ପରି ଉଜ୍ଜ୍ୱଳ ଦେହଟି ବାସୀ ମାଳ-
କରି ପରି ଝାଉଁଳି ଯାଇଛି, ଅକଳଙ୍କ ଚନ୍ଦ୍ରମୁଖଟି ମଳିନ
ହୋଇଯାଇଛି, ( ପ୍ରକାଶ୍ୟେ ) ଅଗୋ ମା ଯଶୋମତି !
କାନ୍ଦନା, ମା, କାନ୍ଦନା, ବୃନ୍ଦାବନରେ ଗୋରୁ ଚରେଇ
ବୁଲୁଥିବାରୁ ପୁଅ କେଉଁଠି ଡ଼ରିଛି, ଗୁଣିଆ ଡାକେଇ
ଝଡ଼ାଇ ଝଡ଼େଇଦିଅ, କାହ୍ନୁ ଏଇନେ ଝାଡ଼ିଝୁଡ଼ି ହୋଇ
ବସିବ ।

ବିମଳା—ମା ଯଶୋଦେ ! ଭାବୁକର ନା, ବଇଁ ଦେବତାଙ୍କୁ ଡ଼ାକ,
କାହ୍ନୁର ଦେହ ଭଲ ହୋଇଯିବ । ମା, କାନ୍ଦନା, କାନ୍ଦନା,
ଧୈର୍ଯ୍ୟ ଧର ।

ଯଶୋଦା—ଅଗୋ ମାଆମାନେ ! ତମେ ସବୁ କଲ୍ୟାଣ କର, ଧନ
ମୋର ଯେପରି ଭଲହୋଇ ଉଠୁ, ମୋ କଲାମାଣିକ
ଅଗରେ ମୋତେ ଯେପରି ମରଣ ହେଉ ।

କମଳା—ନନ୍ଦରାଣି ! ଏପରି କଥା କାହିଁକି କହୁଛ ? ପୁଅର
ଏମିତି କଅଣ ହୋଇଯାଇଛି ଯେ ଏତେ ଅଧୈର୍ଯ୍ୟ ହୋଇ
ପଡ଼ୁଛ, ଏମିତି କେତେ ପିଲାମାନଙ୍କର ଦେହ ମୁଣ୍ଡ ହୁଏ

ନାହିଁ ? ଆମେମାନେ କଲ୍ୟାଣ କରୁଛୁ, ପୁଅ କୁଶଳରେ ରହ, ଏବେ ଗୃହକୁ ଫେରି ଯାଅ, ଆମେମାନେ ଯାଉଛୁ ।

( ପ୍ରସ୍ଥାନ )

ଯଶୋଦା—(ସ୍ୱଗତଃ)ମୁଁ ଏବେ କାହ୍ନୁକୁ ନେଇ ଶଯ୍ୟନ ଘରକୁ ଯାଏଁ ।

ଗୀତ ।

( ନବୀନ ଘନ ଏ କେଉଁ ନୂତନ ମାନବ—ବୃତ୍ତେ )

କ ବୁଦ୍ଧି କରିବି ମୁହିଁ କେଉଁ ଆଡ଼େ ଯିବି ।
କପାଳ ଦଶା ମୋହର କାହାକୁ କହିବି । ୧ ।
କେ କସ ଉପାୟ ଜାଣିଥିଲେ କୁହ ସାହା ।
କଲିଜା ଭିତର ମୋର ହେଉ ଅଛି ଦାହା । ୨ ।
ଆଉ ଦର୍ଶ ଦେବତା ଏ କେଉଁ ଠାରେ ଅଛ ।
ଅଟି ରକ୍ଷାକର ସର୍ବ ଯାଉଛି ମୋ ବଚ୍ଛ । ୩ ।
କେତେ ଓଷା ବାର ବ୍ରତ କରି କରି ମୁହିଁ ।
ପାଇଥିଲି ଶେଷକାଳେ ମୋ କଳାକହ୍ନାଇ । ୪ ।
ରଖ ମା ମଙ୍ଗଳଚଣ୍ଡୀ ତୋ ପାଦେ ଗୁହାରି ।
ନୋହିଲେ ଗଳାଟି ଯିବ ମୋ ପ୍ରାଣ ବାହାରି । ୫ ।

( ପୁତ୍ରକୁ କୋଳକରି ଯଶୋଦାଙ୍କ ପ୍ରସ୍ଥାନ )



ତୃତୀୟ ଦୃଶ୍ୟ—ଗୃହବାହ୍ୟ ନିକଟ ପଥ ।

( କଥାବାର୍ତ୍ତା ହୋଇ କମଳା ଓ ବିମଳାଙ୍କ ଗମନ )

କମଳା—ହଇଗୋ ବିମଳେ ! ପିଲାଟାକୁ କଣ ଦେଖିଲ କହିଲ ମୋତେ?

ବିମଳା—ମୋତେ ତ କିଛି ଭଲ ଜଣାଯାଉ ନାହିଁ; ଜ୍ୱର ତ ଖୁବ ପ୍ରବଳ; ବଞ୍ଚିବ କି ନାହିଁ ସନ୍ଦେହ ।

କମଳା—ଯାହା କହ ନାନ ! ଯଶୋଦାର କପାଳ ବଡ଼ ମନ୍ଦ । ଅମୂଲ୍ୟନିଧି ପାଇ ହରେଇ ବସିଲା, ଏପରି ସୁନ୍ଦରପିଲା କେବେ ଦେଖାନାହିଁ, କି ଦେଖିବାନାହିଁ, ପିଲା ବୋଲି ପିଲା ? ଯେମିତି ଗୋଟାଏ କଳାମାଣିକ, କି ସୁନ୍ଦର କାନ୍ତି, କି ସୁନ୍ଦର ମୁଖ ଶୋଭା, କି ସୁନ୍ଦର ମଧୁର ହସ, କି ସୁନ୍ଦର ଚାହାଁଣି, ପିଲାଟିକି ଦେଖିଲେ ସବୁ ଦୁଃଖ ଦୂର ହୋଇଯାଏ; ଇଚ୍ଛା-ହୁଏ, ପିଲାଟିକି ସଦାସର୍ବଦା କାଖରେ ଘେନି ବୁଲିବାକୁ, ଏପରି ପିଲା କି କେବେ ଗଉଡ଼ଘରେ ବଞ୍ଚେ ?

ବିମଳା—ସତ ଗୋ ଭଉଣି, ସତ; ତାଙ୍କ ବଂଶରେ କୋଉଠି ଜନମ ହୋଇଥିଲା, ଅହା ! ପିଲାଟି ଯେମିତି ନୀଳକାନ୍ତମଣି ! ଯଶୋଦା ଯେତେବେଳେ ଗୋରଚନା ଚନ୍ଦନପାଟ, ବନ-ମାଳା, ବାଙ୍କଚୂଳ ଖଞ୍ଜିଦେଇ କାହ୍ନୁକୁ ଗୋଚାରଣରେ ପଠେଇଦଅନ୍ତି, ସେତେବେଳେ ବୋଧହୁଏ ସତେ ଗୋଲୋକବିହାରୀ ଗୋଲୋକ ଛାଡ଼ି ଗୋପରେ ଆସି ଗୋପାଳବାଳକ ମେଳରେ ଗୋରୁ ଚରାଇ ଯାଉଛନ୍ତି ।

କମଳା—ନାନ ! ମୁଁ କେତେ କେତେ ପିଲା ଦେଖିଛି, କିନ୍ତୁ ଯଶୋଦା-ରାଣୀଙ୍କ ପୁଅପରି ମନଭୁଲା ରୂପ କାନ୍ତି ଆଉ କାହିଁ ଦେଖା-ନାହିଁ । ବିଧାତା ଗୋପରେ ଗୋଟାଏ କାଳଅଗ୍ନି ରଖି-ଦେଇଛି । ଅହା, ଚନ୍ଦ୍ରମୁଖଟି କି ସୁନ୍ଦର ଝଲମଲ ତେଜ, ଆଖିଯୋଡ଼ିକ କି ସୁନ୍ଦର ହିରଲାପରି ହେଉଥାଏ, କି ସୁନ୍ଦର ଚିକ୍କଣ କଳା ଦେହଟି, ଏପରି ପୁଅକୁ ମୁରୁଛି ମାଆ କେମନ୍ତ ଧୈର୍ଯ୍ୟ ଧରି ରହିବ !



( ଜଟିଳା ଓ କୁଟିଳାଙ୍କ ପ୍ରବେଶ

କୁଟିଳା—ହଇଗୋ କମଳେ ! ବିମଳେ ! କଣ ଦେଖି ଅଇଲ ସ ? ମରିବ ନା ବଞ୍ଚିବ ?

କମଳା—ଅ, ମଲା ସ, ଏ କଥା ପୁଣି ତୁମ୍ଭେ ବସନ୍ତର ? ଯିଏ ପରମ ଶତ୍ରୁ, ହୋଇଥିବ, ସେ ମଲେ ଟିକିଏ ଠନ୍ଦାରେ ବସିଯିବ, ତେମେ ଫେଏରେ ଏମିତି କହୁଚ ?

କୁଟିଳା—ଆହା ହା ! ଗୁଣିଏ କହନେଇଁ, କହନେଇଁ, କାଳଅ-ବଲ ବଲ ପୁଅଟା, ଏପାଇଁ ଯଶୋଦା କି ଅହଂକାର କରୁ ନ ଥାଏ, କହିଲ ଦେଖି ? ସେ ପଣ୍ଡି ପୁଅ ଗଙ୍ଗରେ ଭୂଇଁରେ ପାଦ ଦଏ ନାଇଁ ? ସ୍ୱାମୀ, ପୁତ୍ର, ଧନ, ଜନ କାହାର ନାଇ ଗୋ ? ସବୁରି ଅଛି । ଯ୍ୟାବୋଲି କଅଣ ଲୋକେ ଏତେ ଗରବ କରନ୍ତି ? କିଏ କା'ର ପୁଅ ? କିଏ କା'ର ଭାର୍ଯ୍ୟା? ଆଖି ବୁଜିଲେ ସବୁ ଅନ୍ଧକାର, ଦଣ୍ଡକ କଥା ତ ଯୁଗବୁଡ଼ୁ, ଏଥିପେଇଁ ଏତେ ବଡ଼େଇ କାଇଁକି ସ ? ବଡ଼େଇ କଲେ ବିଧାତା ସହେଇ ହଏ, ତା'କଣ ସିଏ ଜାଣେ ନାହିଁ ?

ଜଟିଳା—ଅଗୋ ! ଟିକ୍କାଟା ଏ ଗୋପରେ କଣ୍ଟକ ହୋଇଥିଲା ; ଏଥର ପାପ ଗଲା, ଆଉ କେତେଦିନ ଜୀଇଥିଲେ ଏ ଗୋକୁଳରେ ଯେତେ ସତୀ ଅଛନ୍ତି, ସବୁରି ମାନ ମହତ ନେଇଥାଆନ୍ତା, ସେ କଣ ଗୋପରେ କମ ଦୁରୁଦଣ୍ଡ ହୋଇଥିଲା ? ଦେଖିଚ ତ ? ଘାଟୁଆ ହୋଇ ଘାଟ ସାଧିଚ, ନାଉରି ହୋଇ ଗୋପି-ମାନଙ୍କ ଲାଜ ମହତ ନେଇଚି, ଏପରି କି କୁଳବୁଅଣୁଣି-ମାନଙ୍କ ପାଲଟା ଲୁଗା ପର୍ଯ୍ୟନ୍ତ ଚୋରି କରିଚି, ଯଦି ଆଉ କେତେଦିନ ବାଞ୍ଚିଥାନ୍ତା, ଆଉ ବାକି ରଖିଥାନ୍ତା ? କାଳିଆ ଗଲେ କଲଙ୍କ ଯିବ; ମା, ମା, ସେଇଟା ପୁଣି ଏମିତି ସେମିତି କାଳିଆ, ଯେମିତି ହାଣ୍ଡିକାଳି !

କୁଟିଳା—ସତ ଗୋ ମାଁ, ସେ କାଳିଆଟା ଗୋପକୁ କାଳସର୍ପ ହୋଇଥିଲା, ଦେଖିଲେ ଡର ମାଡେ । ଯାହା ହେଉ ଦଶା ଗଲା, ଭଲ ହେଲା, ଏଥର ନିଶ୍ଚିନ୍ତ ହେବା ।

ଜଟିଳା—କୁଟି ଲୋ ! ଥ, ଅ, ଆମର ଯିବା; ସେଥିରୁ କି ମିଳିବ ।

କମଳା—ତମର ଏ ଅହଙ୍କାର କରିବା ଭଲ ନୁହେ ?

( ସମସ୍ତଙ୍କର ପ୍ରସ୍ଥାନ )



ଚତୁର୍ଥ ଦୃଶ୍ୟ—ଅରଣ୍ୟ ପଥ ।

ବଳରାମ ଏକାକୀ ଦଣ୍ଡାୟମାନ ।

ବଳରାମ—( ସ୍ୱଗତଃ ) ଏଇ ତ ଅରଣ୍ୟପଥ । ଆଉ ବେଶିଦୂର ଯିବାର ଆବଶ୍ୟକ ନାହିଁ, ବେଳ ଅବସାନ ହୋଇ ଆସିଲାଣି; ଏଇନେ ପିତା ନନ୍ଦ, ଶ୍ରୀଦାମାଦି ବ୍ରଜବାଳକଗଣ ଗୋଷ୍ଠରୁ ଏଇ ବାଟେ ବାଟେ ଆସିବେ । ସେମାନଙ୍କ ଅପେକ୍ଷାରେ ଟିକିଏ ଏଠାରେ ରହିବି ।

( ନନ୍ଦ ସହ ଶ୍ରୀଦାମ, ସୁଦାମ, ବସୁଦାମ, ଦାମ ଓ ସୁବଳଙ୍କର ପ୍ରବେଶ )

ନନ୍ଦ—( ବଳରାମଙ୍କୁ ଏକା ଦେଖି ) ବଳରାମ ! ତୁ ଯେ ଏଠେଇଁ ଏକା, କହ୍ନେଇ କାହିଁ ?

ବଳରାମ—କହ୍ନେଇଁ, ମା ଯଶୋଦାଙ୍କ ପାଖରେ ।

ନନ୍ଦ—କହ୍ନେଇ ଗୋଚାରଣ ସମୟରେ ଯଶୋଦାଙ୍କ ପାଖରେ କାହିଁକି ?

ବଳରାମ—ତା'ଦେହ ଭଲ ନାହିଁ ।

ନନ୍ଦ—ଦେହ କଣ ହୋଇଛି ?

ବଳରାମ—ମୂର୍ଚ୍ଛା ଯାଉଛି ।

ନନ୍ଦ—ହଇରେ ବଳ ! କଅଣ କହୁଚୁ ? ( ଗଦ ଗଦ ସ୍ୱରେ ) କି ସର୍ବନାଶ କଥା ଶୁଣାଇଲୁ ? କହ୍ନେଇ ମୋର ମୂର୍ଚ୍ଛା ଯାଇଚି? ହା ! ରେ ନୀଳମଣି ! ହାରେ କାହ୍ନୁ !

( କହୁ କହୁ ମୂର୍ଚ୍ଛା )

ଶ୍ରୀଦାମ—ହାୟ ! ହାୟ ! ! କଣ ହେଲା, ନନ୍ଦରାଜ ମୂର୍ଚ୍ଛିଗଲେ

ସୁଦାମ—ଭାଇ ! ଏଡ଼େ ବେଗି ଭାଇ କହ୍ନେଇର ଅଶୁଭ ଖବର ପିତାଙ୍କୁ ଶୁଣେଇବା ତୁମ୍ଭର ଉଚିତ ନ ଥିଲା ।

ବସୁଦାମ—ଭାଇ ! ପାଷାଣରେ ହୃଦୟ ବାନ୍ଧି ଶେଲମୟ ବାକ୍ୟଶର କପର ମୁଖରୁ ବାହାର କଲ ? ତମ ସୁତୀକ୍ଷ୍ଣ ବାକ୍ୟ ଶର ଘାତରେ ଯେ ଆମମାନଙ୍କର ପ୍ରାଣ ଯାଉଛି ।

ବଳରାମ—ଭାଇ ! ମୁଁ କଣ ନୂତନ କଣ ସମ୍ବାଦ ଦେଲି ? କହ୍ନେଇର ଦେହ ବଡ଼ ଅସୁସ୍ଥ, ସେଇଥିପାଇଁ ମା ଯଶୋଦା ଅତ୍ୟନ୍ତ ଅଧୈର୍ଯ୍ୟ ହୋଇ ତମମାନଙ୍କ ନିକଟକୁ ସମ୍ବାଦ ଦେଇ ପଠାଇଛନ୍ତି, ସମ୍ବାଦ ନ ଦେଇ କପର ରହିବ ଭାଇଲ ତମ୍ଭେ ?

ସୁବଳ—ତା ସତ୍ୟ, ମା ଯଶୋଦା ଯେପର ଭ୍ରମରେ ପଡ଼ିଅଛନ୍ତି, ତେମେ ଭ୍ରମରେ ପଡ଼ିବା କଣ ସମ୍ଭବ ? ତେମେତ କାହ୍ନୁର ସମସ୍ତ ଗୁଣ ଜାଣ । ତେବେ ତେମେ କାହିଁକି ତାର ମୂର୍ଚ୍ଛା ଦେଖି ଅସ୍ଥିର ହୋଇ ପଡ଼ୁଛ ? ଯେ କି ସ୍ୱୟଂ ମୂର୍ଚ୍ଛାମୟ, ତାର କଣ ମୂର୍ଚ୍ଛା ସମ୍ଭବ ହୁଏ ? ସେହି କାରଣମୟ କୌଣସି କାରଣବଶତଃ ମୂର୍ଚ୍ଛା ଯାଇଛନ୍ତି । ତା କଣ ଭାଇ ତେମେ ଜାଣିପାରୁ ନାହିଁ ?

ଶ୍ରୀଦାମ—ଭାଇ ! ଯେ କି ଲୀଳା ଛଳରେ ମୃତ୍ତ ବସ୍ତାର କରି ମାଟି ଖାଇବା ଛଳେ ଯଶୋଦାଙ୍କୁ ଅଶେଷ ବ୍ରହ୍ମାଣ୍ଡ ଦେଖାଇ-

ଥିଲେ, ଅବଲୀଳା କ୍ରମେ ଶକଟ ଭଞ୍ଜନ, ଗୋବର୍ଦ୍ଧନ ଧାରଣ, ଅନଳ ଭକ୍ଷଣ କରିଛନ୍ତି, ଘୋର ମୂର୍ଚ୍ଛା କି ସାଧ୍ୟ କଣ ଯେ ତାଙ୍କ ଦେହରେ ପ୍ରବେଶ କରିବ ?

ସୁଦାମ—ନିତ୍ୟବସ୍ତୁ ପରମାଣୁର କଣ କେବେ ଧ୍ୱଂସ ହୋଇଥାଏ ? ତେଣୁ ସେହି ବ୍ରଜ ଜୀବନ ନିତ୍ୟ ଧନ ନିଧନ ହେବା ଅସମ୍ଭବ ।

ବସୁଦାମ—ଭାଇ ! ଆଉ ଏ ସବୁ କଥାରେ କାର୍ଯ୍ୟ ନାହିଁ । ଏବେ ଯେପରି ମହାରାଜାଙ୍କର ମୂର୍ଚ୍ଛା ଭଙ୍ଗ ହେବ, ତାର ଉପାୟ କରିବା । ଆସ ସମସ୍ତେ ମିଳି ବସିବା, ତେବେ ମହାରାଜା ଚେତନା ଲାଭ କରିବେ ।

( ସମସ୍ତଙ୍କର ଉପବେଶନ ଓ ବସିବା ଅନୁକରଣ )

ନନ୍ଦ—( ସଂଜ୍ଞା ଲାଭାନ୍ତେ ) କାହିଁ ? କାହିଁ ? ମୋର କାହ୍ନୁ କାହିଁ ? କାହ୍ନୁଙ୍କୁ ଦେଖୁନାହିଁ କାହିଁକି ? ନା, ଆଉ ମୁଁ ସ୍ଥିର ହୋଇ ପାରୁ ନାହିଁ । ଯିବି, ଯିବି; ମୋ କୃଷ୍ଣ ପାଖକୁ ଯିବି ।

( ବେଗେ ପ୍ରସ୍ଥାନ )

ବଳରାମ—ଭାଇ ! ପିତାମହାଶୟ ତ ଉନ୍ମତ୍ତ ହୋଇ ଚାଲିଗଲେ । ଚାଲ, ଆମ୍ଭେମାନେ ମଧ୍ୟ ତାଙ୍କ ପଛେ ପଛେ ଯିବା ।

ଗୀତ

କୀର୍ତ୍ତନ ରାଗିଣୀ ।

ଆସ ଆସ ଭାଇ ଯିବାରେ ସକଳେ ପିତାଙ୍କ ପଛରେ ଧାଇଁ ।
କେଉଁଠାରେ ଅବା ମୂର୍ଚ୍ଛାଗତ ହୋଇ ପଡିଯିବେ ପାରେ ସେହି ।
ଏକା କୃଷ୍ଣଲାଗି ପାଗଳ ପରି ।
କାନ୍ଦି କାନ୍ଦି ଯାଉଛନ୍ତି ବାହାରି । ୧ ।

( ସମସ୍ତଙ୍କର ପ୍ରସ୍ଥାନ )



## ପଞ୍ଚମ ଦୃଶ୍ୟ—ନନ୍ଦରାଜା ଭବନ ।

[ ଶ୍ରୀକୃଷ୍ଣ ଭୂମିଶଯ୍ୟାରେ ମୂର୍ଚ୍ଛା ଯାଇଥିବାର ଅବସ୍ଥା । ]

ଯଶୋଦା—( କୃଷ୍ଣଙ୍କ ନିକଟରେ ବସି କରୁଣସ୍ୱରରେ ସ୍ୱଗତଃ )

ଗୀତ ।

(କୃଷ୍ଣ ନ.ମ ଅଷ୍ଟଠାରୁ—ବୃତ୍ତେ )

କାହିଁ ଗଲୁ ଧନ ! ମୋ ନଲ ରତନ
ଦୁଃଖୀନୀର ଚିନ୍ତାମଣି ରେ ।
ଏ ସର ଲବଣୀ— କାହା ମୁଖେ ଦେବି
ମୋ କାହ୍ନୁ ମୁରଲୀପାଣି ରେ ।
ହୃଦୟ ଦେଉଛୁ ହାଣି ।
ନ ଦେଖୁ ତୋ ବଙ୍କିମା ଚୁହାଣି ରେ ॥ ୧ ॥
ଥରେ ଉଠି ମୋତେ, ମାଆ ବୋଲି ଯଡେ,
ଡାକିବୁ କି ଗୁଣ ନିଧିରେ ।
କେଉଁ ଦେବତାଏ, କେଉଁଠାରେ ଅଛ,
ଆହି ରଖ ନଜ ହିନ୍ଦି ଦେ ॥
ବଞ୍ଚ ଉଠୁ ମୋ ଧଙ୍ଗାଳି ।
ସଭଙ୍କି ଦେଉଛୁ ଚତ୍ର ନଉଁ ଗ୍ଲାନ ଦେ ॥ ୨ ॥

କାହ୍ନୁରେ ! ତୋର ଅଭାଗିନୀ ମାଆକୁ ଛାଡ଼ି କୁଆଡ଼େ ଗଲୁ ? ଧନରେ ! ମୁଁ ଯେ ସର ଲବଣୀ ଧରି ତୋ ପାଖରେ ବସିରହିଛି । ତୁ ଥରେ ଉଠି ମୋ କୋଳରେ ବସି ଚନ୍ଦ୍ରମୁଖ ଟିରେ ମୋତେ ମାଆ ବୋଲି ଡାକ, ବାପରେ ! ମୁଁ ଯେ କେତେ ବେଳୁ ତୋର ଚନ୍ଦ୍ରମୁଖରୁ ମଧୁର ଦରୁଟିବଚନ ଶୁଣିନାହିଁ, କେତେବେଳୁ ତୋ

ମୁଖରେ ସବୁଲବଣୀ ଖୋଇଦେଇ ନାହିଁ, ନୀଳମଣିରେ !
ଲବଣୀଚୋରୀ ଛଳରେ ମୁଁ ତୋର ହାତ ଦୁଇଟି ଦାମେ
ବାନ୍ଧିଥିଲି ବୋଲି କଣ ସେଇଥିପାଇଁ ମୋର ଦୁଃଖିନୀ
ମାଆଙ୍କୁ ଛାଡି ଚାଲିଗଲୁ ? ଅମୂଲ୍ୟନିଧିରେ ! ପୁଅ ଅଝଟିଆ
ହେଲେ ମା କଣ ପୁଅକୁ ବାନ୍ଧେ ନାହିଁ ? ତା ବୋଲି
କଣ ପୁଅ ପେଟା ମାଆଙ୍କୁ ତ୍ୟାଗ କରି ଯାଏ ? ମୁଁ ଆଉ
ତୋତେ କେବେହେଲେ ବାନ୍ଧିବି ନାହିଁ, ତୁ
ଫେରି ମୋତେ ମାଆ ବୋଲି ଥରେ ଡାକ । ଗୋପରେ । ମୁଁ
ଏତେକାଳ ଡାକୁଚି, କଥା କହୁନାହୁଁ କାହିଁକି ? ନିତ
ନିତ ବନରେ ଗାଈ ଚରାଉଥିଲୁ ବୋଲି କ'ଣ ସେଇ
ଦୁଃଖରେ ଜୀବନ ହରେଇଦେଲୁ ? ମୁଁ ତ ତୋତେ
ଦିନକାଳେ ହେଲେ ଗୋଷ୍ଠକୁ ପଠେଇବାକୁ ଇଚ୍ଛା
କରେନାହିଁ ! ତୁ ନିଜେ ଶରଧା କରି ବଂଶୀବଜେଇ
ଗୋଷ୍ଠକୁ ଯାଉ ନା ? ନଇଲେ ମୋର ଅଭାବ କଣ
ଯେ ତୋତେ ଗୋଠକୁ ପଠେଇବି ? ମୋ' ଭଣ୍ଡାରରେ
ତ ସବୁ ଅଛି—ମଣିମୟ ଅଳଙ୍କାର, ବହୁମୂଲ୍ୟ ବସନ,
ଏପରି କେତେ କେତେ ଧନ ରତ୍ନରେ ମୋ ଭଣ୍ଡାର
ପୂରିଚି, ସେ ସବୁ ଦେଇ ତୋତେ ସଜେଇଲେ ତ ତୁ
ସେଥିରେ ସନ୍ତୋଷ ହେଉନାହିଁ, ସେହି ବନଫୁଲମାଳା,
ସେଇ ବଙ୍କା ଜାମୁଡାଳ, ସେଇ କାଇଁଆମାଳି, ସେଇ
ମୟୂରପୁଚ୍ଛ ଚୂଳରେ ସଦାସର୍ବଦା ସ୍ନେହ କରିଥାଉ, ମୁଁ ତ
ସେଥିପାଇଁ ମନା କରେନାହିଁ । ଧନ ! ତୁ ଥରେ ଉଠ;
ମୁଁ ତୋତେ ସେଇ ବନବେଶଟି ସଜାଇ ଦେଇ ନୟନ
ପୂରେଇ ଟିକିଏ ଦେଖେ ।

( ନନ୍ଦସହ ବ୍ରଜବାଳକଗଣଙ୍କର ପ୍ରବେଶ )

ନନ୍ଦ—ବତ୍ସ ରେ ! କାହିଁ, ମୋ ପ୍ରାଣର କହ୍ନାଇ କାହିଁ ?

ବଳରାମ—ଏହି ଯେ ଗୋପାଳ ଧରାତଳେ ପଡ଼ିଛି ।

ନନ୍ଦ—( ଉପବେଶନ ପୂର୍ବକ ସ୍ୱଗତ ) ଆହା ! ଗୋକୁଳଚନ୍ଦ୍ର ସତକୁସତ ଧରାରେ ଅସ୍ତମିତ । ହାଏ ଆଜ ମୋର ଆନନ୍ଦ-ହାଟରେ ହାହାକାର-ଅନଳ ଜାଳିଦେଲ ? କୃଷ୍ଣ ରେ ! କାହିଁକି ବାପ ଧରାତଳେ ଶୟନ କରିଛୁ ? ଉଠ ବାପ ! ପିତା ବୋଲି ମୋ କୋଳକୁ ଆ । ଯଶୋଦେ ! ଅକସ୍ମାତ କୃଷ୍ଣଙ୍କୁ ଏପରି ଅବସ୍ଥା ଘଟିଲା କାହିଁକି ? ବୃନ୍ତଚ୍ୟୁତ ନୀଳକମଳପତ୍ର ଧରାରେ ପଡ଼ିରହିଛି କି ଦେଖୁ ? ସୁଧାକରର ଧରାଶୟନ କଣ ଶୋଭା ପାଏ ? ମସ୍ତକର ଭୂଷଣ କଣ ଭୂତଳେ ପଡ଼ିଥିବାର ଭଲ ଦେଖାଉ ? ଫଣୀର ମଣି କଣ ଧୂଳିଧୂସରିତ ହେବା ସମ୍ଭବେ ? ହୃଦୟର ହେମହାର କଣ ହୃଦୟ ଛଡ଼ା ଅନ୍ୟ କୌଣସି ସ୍ଥାନରେ ଶୋଭାପାଏ ? ଯଶୋଦେ ! ତୁମ୍ଭେ ଆଜି ପ୍ରାଣଧନକୁ କଣ କହିଛ ? ପୁନରାୟ କରବନ୍ଧନ କରିଛ ? ନା, ସରଲବଣୀ ଖାଇଥିଲା ବୋଲି ବାକ୍ୟ-ଶର ହାଣିଛ ? ଲବଣୀପାଇଁ ତ ନୀଳମଣିକୁ ମାରି ନାହିଁ ? ବୋଧ ହେଉଛି ନିଶ୍ଚୟ ମାରିପିଟି କରିଛ । ତୁମର ଅପମାନରୁ ମନ ଅଭିମାନରେ କୃଷ୍ଣ ମୋର ପ୍ରାଣ ହରାଇଛି । ତମେ ମୋର ହୃଦବାସୀ ପ୍ରିୟା ନୁହ । ତମେ ସର୍ବଗ୍ରାସୀ ରାକ୍ଷସୀ, ତେଣୁ ନୀଳମଣିକୁ ଗ୍ରାସ କରିଛ । ତମପାଇଁ ଆଜ ମୁଁ କୃଷ୍ଣ-ଧନକୁ ହରେଇଲି । ମୁଁ ଯଦି ଜାଣିଥାନ୍ତି, ତୁମ୍ଭେ କାଳସର୍ପିଣୀ ବୋଲି, ତାହାହେଲେ ମୁଁ ଅମୃତଜ୍ଞାନ ପାଇଁ ଯତ୍ନରେ ତମକୁ ଗୃହରେ ରଖି ନ ଥାନ୍ତି; କୈକେୟୀ ଯେପରି ରାମକୁ ବନ-

ବାସ କେଇ ପଛର ପ୍ରାଣ ବଧ କରଥିଲେ; ତୁମେ ମଧ୍ୟ ସେହିପର ନାଲମଣିଙ୍କ ଗ୍ରାସକର ମୋର ପ୍ରାଣବଧିବାକୁ ବୃଦ୍ଧ୍ୟତ ହେଉଛ । ତୁମେ ଯେ ପାଷାଣହୃଦୟ ରମଣୀ, ତା ମୁଁ ଅନେକ ଦିନୁ ଜାଣେ ।

ଯଶୋଦା— ମହାରାଜ ! ମୁଁ ଯଥାର୍ଥରେ ପାଷାଣୀ; ନଇଲେ କି ନୀଳମଣି ମୋତେ ଛାଡ଼ି ଯାଆନ୍ତା ? ମୁଁ ସର ଲବଣୀପାଇଁ କର-ବନ୍ଧନ କରିଥିଲି ବୋଲି କାହ୍ନୁ ମୋର ମୋତେ ଛାଡ଼ି ଗଲା । ( କୃଷ୍ଣ ଉଦ୍ଦେଶ୍ୟ ) କୃଷ୍ଣରେ ! ମୁଁ ଆଉ ତୋତେ ବାନ୍ଧିବ ନାହିଁ, ତୁ ଥରେ ମୋ କୋଳକୁ ଆ; ନଇଲେ ମୁଁ ମଧ୍ୟ ତୋ ସଙ୍ଗରେ ସାଥି ହେବି ।

ନନ୍ଦ— (ଯଶୋଦାଙ୍କ ପ୍ରତି) ପ୍ରାଣପୁତ୍ରମାର ପ୍ରାଣ ନାଶକର ମିଛରେ କାନ୍ଦଣା କାହିଁକି ? ତମେ ତ ସର୍ବନାଶର ମୂଳ । ତମେ ଯଦି ଗୋପାଳକୁ ପେଟଭର ଖାଇବାକୁ ଦେଇଥାନ୍ତ, ତାହାହେଲେ କଣ ପୁତ୍ର ମୋର ପ୍ରାଣତ୍ୟାଗ କରିଥାନ୍ତା ?

ଯଶୋଦା—(କାତରସ୍ୱରେ ସ୍ୱଗତଃ) ଉଃ, କି ବଜ୍ରଭେଦୀ ବାକ୍ୟ ବାଣ, ଆଉ ଯେ ସହ୍ୟ ହେଉ ନାହିଁ, ପ୍ରାଣ କଲବଲ ହେଉଛି । ମହାରାଜାଙ୍କର ବାକ୍ୟବାଣରେ ପ୍ରାଣ ଛଟପଟ ହେଉଛି; ହାୟ ! ହାୟ ! ପ୍ରାଣପଣେ ପ୍ରାଣ କୃଷ୍ଣଙ୍କୁ ଲାଳନପାଳନ କରି ବଢ଼ାଇଲି, ଶେଷକୁ ମୋ କପାଳେ କଳଙ୍କବାଦ ଥିଲା ! ମହାରାଜ ନିଶ୍ଚୟ ମନେକରୁଛନ୍ତି – ଯଶୋଦା କେବଳ କାହ୍ନୁ ବଧର କାରଣ । ନା ; ଆଉ ମୁଁ କଳଙ୍କିତ ପ୍ରାଣ ରଖିବି ନାହିଁ । ନୀଳମଣି ରେ ! ତୋ ମନରେ କଣ ଏଇଥି ଥିଲା ? ତୁ ତୋର ମାଆକୁ କଳଙ୍କସାଗରେ ବୁଡ଼ାଇବୁ ବୋଲି କଣ ଅଳ୍ପ ପ୍ରାଣ ତ୍ୟାଗ କରିଦେଲୁ ? ହା

ଗୋପାଲ ! ହା ନୀଳମଣି ! ହା କୃଷ୍ଣ !!! ତୁ ମୋତେ ଛାଡ଼ି କୁଆଡ଼େ ଗଲୁ ? ( କହୁ କହୁ ମୂର୍ଚ୍ଛା । )

ନନ୍ଦ—( ସ୍ୱଗତଃ ) ଏ କି ସର୍ବନାଶ ! ଯଶୋଦା ମଧ୍ୟ ଯେ ପ୍ରାଣ ତ୍ୟାଗ କଲେ । ହାୟ, ହାୟ; କି କୁହେଁ କ୍ରୋଧପରବଶ ହୋଇ ବାହୁକ ମୁଁ ଯଶୋଦାଙ୍କୁ ଦୁର୍ବାକ୍ୟ କହିଲି ! କାହିଁକି ଅଜ୍ଞ ମୋର-ବୁଦ୍ଧିର ବିପର୍ଯ୍ୟୟ ଘଟିଲା ! ଆଜ ମୁଁ ସ୍ତ୍ରୀବଧର କାରଣ ହେଲି, ସ୍ତ୍ରୀବଧଜନିତ ମହାପାପରେ ପତିତ ହେଲି । ମୋର ମରଣହିଁ ମଙ୍ଗଳ । କୃଷ୍ଣ ରେ ! ପିତା ମାତା ବଧର ନିମନ୍ତେ କଣ ଭୂତଳେ ଜନ୍ମଗ୍ରହଣ କରିଥିଲୁ ? ଉଠି ଦେଖିଲୁ ବାପ- ତୋ ମାଆ ଯଶୋଦାର କି ଦୁର୍ଦ୍ଦଶା ଘଟିଛି ।

ବଳରାମ—ଭାଇ କହୁଛି ! ଉଠ, ଧୈର୍ଯ୍ୟ ଧର; ଆଉ ପିତାମାତାଙ୍କୁ କଷ୍ଟ ଦିଅ ନା । ହା ରେ ଭାଇ କାହ୍ନୁ ! ତୁ କଅଣ ପିତାମାତା ବଧ କରିବା ଭଲ ପାଉଲୁ ନାହିଁ ? ତୁ ଯେତେବେଳେ ଭୂତଳେ ଜନ୍ମଗ୍ରହଣ କରୁଛୁ, ସେତେବେଳେହିଁ ପିତା ମାତାଙ୍କୁ ବଧ କରୁଛୁ । ପର୍ଶୁରାମରୂପରେ ଜନନୀର ମସ୍ତକ ଛେଦନ କରିଛୁ, ରାମରୂପରେ ପିତା ଦଶରଥଙ୍କୁ ବଧ କରିଛୁ, କୃଷ୍ଣରୂପରେ ମା' ଯଶୋଦାଙ୍କୁ ବଧ କଲୁ, ତୁ ଇଚ୍ଛାମୟ; ତୋ ଇଚ୍ଛାରେ ସମ୍ଭବ ଅସମ୍ଭବ ସମସ୍ତହିଁ ହୋଇ ପାରେ । ତୋର ଯେତେ ସବୁ କାର୍ଯ୍ୟ, ସେ କାର୍ଯ୍ୟ- ମାନ ଅନ୍ୟ କେହି କଲେ, କେବେହେଲେ ଭବସାଗର ପାରହୋଇ ପାରେ ନାହିଁ ।

ଶ୍ରୀଦାମ—ଭାଇ କହୁଛି ! ଉଠ, ତୋତେ ସଙ୍ଗରେ ନେଇ ଗୋଷ୍ଠକୁ ଯିବୁ । ତୋତେ ନ ଦେଖି ସଖାଗଣ ଉର୍ଦ୍ଧ୍ୱମୁଖେ ତୋର ଆଶା-ପଥ ଚାହିଁ ରହିଅଛନ୍ତି ।

ସୁଦାମ—ରସରାଜ ! ଅଜ ତୋର ଏ ଭାବ ଦେଖୁଛି କାହିଁକି ?
ଭାଇ ! ଆଉ କଣ ତୁ ବନବେଶରେ ଗୋପବାଳକମାନଙ୍କ
ମଝିରେ ନାଚି ନାଚି ଗୋଷ୍ଠକୁ ଯିବୁ ନାହିଁ ? ଭାଇରେ !
ଶୀଘ୍ର ଉଠ, ତୋତେ ଗୋଷ୍ଠବେଶରେ ସଜେଇ ଗୋଷ୍ଠକୁ
ନେଇ ଯିବୁଁ ।

ବସୁଦାମ—ଭାଇ କହେଇ ! କାହିଁକି ଆଉ ଆମମାନଙ୍କୁ କନ୍ଦାଉଛୁ ?
ଶୀଘ୍ର ଉଠୁ, ଆମ୍ଭମାନଙ୍କୁ ସଖା ବୋଲି ଡାକ ପ୍ରାଣରେ
ବଞ୍ଚା ।

ସୁବଳ—ଲୀଳାମୟ ! ତୋର ଲୀଳା ବୁଝିବା ବଡ଼ କଷ୍ଟ । ତୁ କେତେ-
ବେଳେ ଯେ କି ଲୀଳା କରୁ କାହାରି ବୁଝିବାର କ୍ଷମତା
ନାହିଁ । ହାରେ ଭାଇ ! ପିତା, ମାତା, ବନ୍ଧୁ, ବାନ୍ଧବ, ଆତ୍ମୀୟ
ସ୍ୱଜନମାନଙ୍କୁ ବଧ କରିବାକୁ ଏ କଣ ତୋର ଗୋଟିଏ
ଲୀଳା ?

ସଖାଗଣ—( ଅକୁଳିତ ଭାବେ )

ଗୀତ ।

( କୃଷ୍ଣଲୀଳା ଶୋକବାଣୀ ବୃତ୍ତେ )

ଉଠରେ କହ୍ନାଇ ଭାଇ ! ଉଠ ବେଗକରି ।
ଗୋଠକୁ ଯିବାରେ ଆଜ ବେଳ ହେଲା ଡେରି ॥୧॥
ଅଛି ତୋହରନା ଖେଳ ହୋଇନାହିଁ ଭଲ ।
ଏ କି ଖେଳ ଖେଳି କରୁଅଛୁ କଲବଲ ॥୨॥
ତୋତେ ନ ଦେଖି ରେ କାହ୍ନୁ ! ଗାଈମାନେ ବ୍ୟସ୍ତ ।
ଚରୁନାହାନ୍ତି ସୁଖରେ ଭାଣ୍ଡୀର ବନସ୍ତେ ॥୩॥
ବାଜୁ ନାହିଁ ବୋଲି ଅଜ ତୋ ମୋହନ ବଂଶୀ ।
କାହା ମନେ ସୁଖ ଶାନ୍ତି ନାହିଁ ଗୋପବାସୀ ॥୪॥

ଅଛ ଏ ଦାରୁଣ ଦଶା କିମ୍ପା ହେଲା ତୋର ।
ଆମ୍ଭମାନଙ୍କୁ କି ଅଛୁଁ ଭଲ ଦେବୁ ପର ? ।୫।
କେତେ ତ ଭକ୍ଷ୍ୟ ଗୋଲ ବଟେନ ହେଉ ଆଗ ।
ପୁଣି ସେହୁଷଟି ମେଳା ମେଶା ତ ହୁଅଇ ।୬।
ସଜ୍ଜୁଡ଼ ବୋଲି ତୋର ନାହିଁ ଅଭିମାନ ।
ତୋ ବଶ୍ୟରେ ପାନ ବଡ଼ ସକଳେ ସମାନ ।୭।
ଅନ୍ନ ପୂଜା ପିଠା ହୋଇ ନାହିଁ ତୋର ବିନା ।
ତାହାକୁ ରୁଚେବ ଅଗ ନ ଖାଇଲେ କାହ୍ନା ।୮।
ଉଠ ନାଚ ନାଚ ଆମ୍ଭ ସେମେଲେ ଯିବୁ ବନ ।
ଅଟେ ପ୍ରିୟ ସଖା ବୋଲି ଡାକ ରେ ମୋହନ ।୯।
ଏ ଲୀଳା ସୁନ୍ଦର ନୁହେ କର ସମ୍ବରଣ ।
ଉଠ ଉଠ ପ୍ରିୟ ସଖା ଧରୁଛୁ ଚରଣ ।୧୦।

(ବାନ୍ଧ ବାନ୍ଧ ସମସ୍ତ ଗୋପବାଳକମାନେ ଚରଣ ଆଉଁଶି ଲାଗିଲେ )

ନାରଦ—(ସ୍ୱଗତଃ) ଅହା ! ଭଗବାନଙ୍କର କି ବିଚିତ୍ର ଲୀଳା, ଯଥା-ନାଥ ବ୍ରହ୍ମାଙ୍କର କଳଙ୍କମୋଚନ ନିମନ୍ତେ ଅଜ କପଟ-ମୂର୍ଚ୍ଛାର ବଶବର୍ତ୍ତୀ ହୋଇଅଛନ୍ତି, ଚୈତନ୍ୟମୟ ଆଜ ଅଚେତନ୍ୟ ଅବସ୍ଥାରେ ଧରାରେ ପଡ଼ିଛ । ଯାହାଙ୍କ ନାମରେ ଅଚୈତନ୍ୟ ଦୂର ହୁଏ, ସେ ଅଜ ସ୍ୱୟଂ ଅଚୈତନ୍ୟ, ଏ କଣ ଅଳ୍ପ ଆଶ୍ଚର୍ଯ୍ୟ ! ଆହା ! କୃଷ୍ଣଗତପ୍ରାଣା ଯଶୋଦା କୃଷ୍ଣଙ୍କ ମୂର୍ଚ୍ଛା ଦେଖି ମୂର୍ଚ୍ଛିତା ହୋଇ ଅନିବାର ନିଶ୍ୱାସ ତ୍ୟାଗ କରୁଅଛନ୍ତି । ନନ୍ଦ ନିରାନନ୍ଦ ହୋଇ ନୟନଜଳରେ ଭାସୁଅଛନ୍ତି । ବାଳଗୋପାଳଙ୍କ ସାଥି ଗୋପାଳବାଳକ-ମାନେ ଚକ୍ଷୁଜଳରେ ବକ୍ଷ ଭସାଉଅଛନ୍ତି । ପିତା ମାତାଙ୍କର ପୁତ୍ର କି ଅମୂଲ୍ୟଧନ ! (ପ୍ରକାଶ୍ୟ) ଗୋପବାଳକ ! ଗୋପାଳ

ଲାଗି ବୃଥା ବିଳାପ କରୁଅଛ କାହିଁକି ? ଯେ ଧନ କରାଙ୍ଗୁଳିରେ ଗୋବର୍ଦ୍ଧନ ଧାରଣ କରିଛି, ସେ ଧନ କି ନିଧନ ହୁଏ ? ହେଣୁ ତୁମ୍ଭେ କାଳମଣି ନିଧନର ଭୟ କରୁଛ ?

ନନ୍ଦ—ଅହୋ, ଆସନ୍ତୁ, ମହର୍ଷେ ଆସନ୍ତୁ ! ଆଜ ଆପଣଙ୍କର ପଦାର୍ପଣରେ ଏ ବ୍ରଜଧାମ ପବିତ୍ର ହେଲା । ଆମ୍ଭେମାନେ ମଧ୍ୟ ପବିତ୍ର ହେଲୁଁ, ଏବେ ଅନୁଗ୍ରହରେ ଉପବେଶନ କରି କାହ୍ନୁ ମୋର ଯେପରି ଚୈତନ୍ୟ ଲାଭ କରେ ତାର ଉପାୟ କହି, ଆମ୍ଭମାନଙ୍କରେ ମୃତଦେହରେ ଜୀବନଦାନ କରନ୍ତୁ । ଏହି ଦେଖନ୍ତୁ କୃଷ୍ଣଙ୍କ ମୂର୍ଚ୍ଛିତ ଦେଖି ଯଶୋଦା ମଧ୍ୟ ମୃତପ୍ରାୟ ହୋଇ ପଡ଼ିଛନ୍ତି ।

ନାରଦ—ମହାରାଜ ! କୃଷ୍ଣ ତ୍ରିଲୋକର କାଳ ଅକାଳରେ ମୃତ୍ୟୁ ହୋଇଥାଏ କି ? ତୁମ୍ଭେ ଆଉ ବିଳମ୍ବ କର ନା, ଶୀଘ୍ର ଯଶୋମତୀଙ୍କୁ ଚେତା କରାଅ । ମୁଁ ଶ୍ରୀକୃଷ୍ଣ ମୂର୍ଚ୍ଛାଭଙ୍ଗର ସଦୁପାୟ କହିଦେବି ।

ନନ୍ଦ—ଯଶୋଦେ ! ତୁମେ ଶଯ୍ୟାରୁ ଉଠ, ଦେବର୍ଷି ନାରଦ ଗୋପାଳକୁ ଦେଖିବା ନିମନ୍ତେ ଆସିଛନ୍ତି ।

ଯଶୋଦା—(ସଂଜ୍ଞା ଲଭନ୍ତେ ନାରଦଙ୍କ ପ୍ରତି) ପ୍ରଭୋ ! ଯଦି ଦୟାକରି ପଦଧୂଳି ଦେଲେ, ତେବେ ଗୋପାଳ ମୋର ଯେପରି ଭଲ ହୁଏ, ତାହାର ଉପାୟ କହନ୍ତୁ ?

ନାରଦ—ନନ୍ଦରାଣି ! ଭୟ କଣ ? ତୁମ୍ଭେମାନେ ଏବେ ଗୋଟିଏ କାର୍ଯ୍ୟ କର, ସୁଚିକିତ୍ସକ, କବିରାଜ ଆଣି କୃଷ୍ଣଙ୍କୁ ଦେଖାଅ, ତା ହେଲେ କୃଷ୍ଣ ଭଲ ହେବ; ମୁଁ ଯାଉଛି, ସମୟାନ୍ତରେ ସାକ୍ଷାତ କରିବି ।

ଯଶୋଦା—( ନନ୍ଦଙ୍କ ପ୍ରତି ) ନାଥ ! ଆଉ ବିଳମ୍ବ କରନ୍ତୁ ନାହିଁ, ଶୀଘ୍ର ଯାଆନ୍ତୁ—ଏ ଗୋପପୁରେ ଯେତେ ବୈଦ୍ୟ ଅଛନ୍ତି ସେମାନଙ୍କୁ ଡାକି ଆଣନ୍ତୁ ।

ନନ୍ଦ—ପ୍ରିୟେ ! ଧୈର୍ଯ୍ୟ ଧର, ମୁଁ ଯାଉଛି, ଲୋକ ପଠାଉଛି ।

( ପ୍ରସ୍ଥାନ )

ଯଶୋଦା —ମା ସର୍ବମଙ୍ଗଳେ ! ମୁଁ ତୋର ଭଜନ ସାଧନ କିଛି ଜାଣେ ନାହିଁ, ମା ଗୋ ! ତୋ'ର ପଦ ମାତ୍ର ମୋର ଭରସା, ଦୟାମୟି ! ଦୟାକରି ତୋର ପଦାଶ୍ରିତ ଦାସ କୃଷ୍ଣଙ୍କୁ ରକ୍ଷା କର ।

ସ୍ତୁତି ଗୀତ ।

ଅଟଗୋ ମାତଃ ଦୟାମୟୀ ଶଙ୍କଟତାରିଣୀ ।
ରକ୍ଷା କର ମା ସର୍ବମଙ୍ଗଳେ କାତ୍ୟାୟିନୀ ମା ॥
ଭଜନ ସାଧନ ତୋର ନ ଜାଣେ ମା କିଛି ।
ତୋହର ଚରଣ ମାତ୍ର ଭରସା କରିଛି ମା ॥
ଏକା ଛୁଅ ବାଳା ମୋର ଏ କଙ୍ଗାଳୀଣିକ । ।
ତୋ ପଦ୍ମରେ ସମର୍ପିଛୁ ବିପଦରୁ ରଖ ମା ।

( ନନ୍ଦ, ଉପନନ୍ଦ ସହିତ କୃଷ୍ଣ ଦାସ ଓ ଶମ୍ଭୁ ଦାସ ବୈଦ୍ୟଦ୍ୱୟଙ୍କର ପ୍ରବେଶ )

ନନ୍ଦ— ( ଆଗରେ ଆସି ) ଆସନ୍ତୁ, ଆସନ୍ତୁ, କବିରାଜ ମହାଶୟମାନେ ଆସନ୍ତୁ । ଦେଖନ୍ତୁ ମୋର ଗୋପାଳର କି ଅସୁସ୍ଥ ହୋଇଛି । ଯେ କି ମୋର ଗୋପାଳକୁ ଭଲ କରିଦେବ, ସେ ଯେତେ ଧନ ଚାହିବ, ନିଶ୍ଚୟ ଦେବି ।

ଯଶୋଦା —ଯେ କି ମୋ ଶାଳମଣିକି ଭଲ କରିଦେବ, ତାଙ୍କୁ ମୁଁ ସର୍ବସ୍ୱ ସମର୍ପଣ କରିବି ।

କୃଷ୍ଣ ଦାସ—କିହେ ବନ୍ଧୁ, ଦାସ ! ରାଜା ରାଣୀଙ୍କ କଥା ଶୁଣିଲ ତ ? କଣ କହ, ଭଲ କରିପାରିବ ? ଭଲ କରିପାରିଲେ ଗୋଷ୍ଠ ଏ ଧନରେ ବଡ଼ଲୋକ ହୋଇଯିବା ଏଥର ।

ବିଷ୍ଣୁ ଦାସ—ଅହେ ! ଯେ ସବୁ କଥା ଉଠାଉଛ, ସମ୍ବାଦପତ୍ରରେ ପଢ଼ିଲେ
ଅନେକ ଏକପତ ରାମ ରାମ, ଦୁର୍ଗା ଦୁର୍ଗା, ବୋଲୁଥାନ୍ତି ।
କିନ୍ତୁ ବିପଦକୁ ଲଙ୍ଘିବାର ପାଇଲେ, ସେ ନାୟକ ହେଙ୍କ
ସମ୍ବନ୍ଧ ନ ଥାଏ । ଯିଏ କଳଙ୍କିତ ହେବାର ଡରେ ଅନେକଙ୍କର
ପିତା ମାତା ଟେକେର ଝିଅ ଘରେ ଦେବାକୁ ଚାହାନ୍ତି,
ସେମାନେ ଭଲ ହେଉନ୍ତୁ, ଅଥବା ସେ ସମାଜର କଥା ମଧ୍ୟ
ମନରେ ନ ଥାଏ. ମୁଁ ଏ ବୟସରେ ଏହି ଗୋପପୁରରେ
ଅନେକ ଗୋପ ଶିଶୁଙ୍କ ଭଲ ଦେଖିଛି, ସେମାନଙ୍କର ଝିଅ
ଜନ୍ମହୁଁ ଦେବା ଦୂରର ଥାଉ ଅବସ୍ଥାକୁ କାହିଁ ମୁହଁରେ
କେହି ମଧ୍ୟ ପକାଇବ ନାହିଁ । ଏବେ ଯେଉଁ ସୁନା
ରୂପାର କଥା ଶୁଣୁଛ; କଳାସୁନା ଭଲ ହେଲେ ସେତେବେ-
ବେଳେ ଏ ସୁନାକଥା ଶୁଣିବାକୁ ମାତ୍ର ସାର ହେବ ।
ପାଉଣା ଦବାରେ କଷ୍ଟ କହଲ ।

କୃଷ୍ଣ ଦାସ—ସେ କଥା ମିଛ ନୁହେଁ, ଅଛି କାଳ ଗୁଣର ଗୌରବ ନାହିଁ ।

ବିଷ୍ଣୁ ଦାସ—ଠିକ୍ କହୁଛ, ତପସ୍ୟା କରିବାର ତ ଏହି ଫଳ ।

କୃଷ୍ଣ ଦାସ-ଫଳାଫଳ ସବୁ କର୍ମ ଉପରେ ନ୍ୟସ୍ତ, ଯାହାହେଉ ଏସବୁ
କଥାର ଆନ୍ଦୋଳନରେ ଆବଶ୍ୟକ ନାହିଁ, ଯେଉଁ
ସକାଶେ ଆସିବାର କଥା, ସେ ବିଷୟ ସାଧନ କରିବା,
ତମର ତପସ୍ୟା ସମ୍ବନ୍ଧେ କିଛି ଜଣା ଶୁଣା ଅଛି ନା ?

ବିଷ୍ଣୁ ଦାସ—ଜଣା ଶୁଣା ତୁମର ପ୍ରାପ୍ୟ ।

କୃଷ୍ଣ ଦାସ—ତେବେ ଆଜ୍ଞା କର ।

ବିଷ୍ଣୁ ଦାସ—ଉଷଧ ମନ୍ତ୍ରପୂତ ନୁହେ ଯେ, ଆଜ୍ଞା କରିବାକୁ ହେବ ନ;
ଏଥିକି ନାଡ଼ି ଜ୍ଞାନ ଥିବା ଦରକାର, ରୋଗକୁ ଚାହିଁବା
ଦରକାର, ତେବେ ଯାଇ ରୋଗର ପ୍ରତିକାର ହେବ ।

କୃଷ୍ଣ ଦାସ—ଏହି ଛନ୍ଦୋନ୍ତ ମଧ୍ୟରୁ ମୋତେ ଗୋଟିଏ ବିଷୟ ଖୁବ୍ ଜଣାଅଛି ।

ବିଷ୍ଣୁ ଦାସ—ଏଥିରୁ କେଉଁଟା ଜାଣ ?

କୃଷ୍ଣ ଦାସ—ନାଡ଼ୀ ଜ୍ଞାନଟା ।

ବିଷ୍ଣୁ ଦାସ—ତମର ଯେପରି ନାଡ଼ୀ ଜ୍ଞାନଟା, ମୋର ସେହିପରି ରୋଗ ଚିହ୍ନା ଜ୍ଞାନଟା ଅଛି । ଏନ୍ତୁ ସବୁ ରୋଗର ଔଷଧମାନ ତୁମ୍ଭ ନିକଟରେ ଅଛି ତ ?

କୃଷ୍ଣ ଦାସ—ଅନ୍ୟ ଔଷଧ ଥାଉ ବା ନ ଥାଉ, ମୁଁ ମାନସିକ ଚିନ୍ତାରୋଗର ମଥାଙ୍କଟ ବିଲ ଗୋଟାଏ ଔଷଧ ଅବଶ୍ୟ ରଖିଅଛି । ତା'ର ନାମ "ସର୍ବବ୍ୟାଧି ବିନାଶକ ରସମଞ୍ଜୁରୀ" ଯାହା ସେବନ କଲେ ସକଳ ରୋଗ ଭଲହୁଏ, ସେହି ଔଷଧର ବ୍ୟବସ୍ଥା କରାଯିବ ।

ବିଷ୍ଣୁ ଦାସ—ତେବେ ଆସ, ସେ ଔଷଧ ଦେବା ।( ନନ୍ଦଙ୍କ ପ୍ରତି ) ମହାରାଜ ! କାହିଁ ? ଆପଣଙ୍କର କୃଷ୍ଣ କାହିଁ ?

ନନ୍ଦ—ଏହି ଦେଖନ୍ତୁ କୃଷ୍ଣ ମୋର ଧରାତଳେ ମୂର୍ଚ୍ଛିତ ।

କୃଷ୍ଣ ଦାସ—( କୃଷ୍ଣଙ୍କ ନିକଟରେ ବସି ) ରୋଗର ଲକ୍ଷଣ ଚିହ୍ନିବା, ଓ ନାଡ଼ି ଦେଖି ( ଚିନ୍ତା ଯୁକ୍ତ ହୃଦୟେ ) ଓଃ, ରୋଗଟ ବଡ଼ ଶକ୍ତ, ରକ୍ଷା ପାଇବା ବଡ଼ କଠିନ ।

ବିଷ୍ଣୁ ଦାସ—କପରି ଦେଖିଲ ?

କୃଷ୍ଣ ଦାସ— ନାଡ଼ୀର ଗତିତ ଭଲ ନୁହେ ।

ବିଷ୍ଣୁ ଦାସ—ଗତି ଭଲ ହେଉ ବା ମନ୍ଦ ହେଉ, ତମର ସର୍ବବ୍ୟାଧି ବିନାଶକ ରସମଞ୍ଜରୀ ଔଷଧ ସେବନ କରାଇଲେ ରୋଗୀ ଆରୋଗ୍ୟ ହେବ ।

ସ୍ତୁ ଦାସ—ମୁଁ ମଧ୍ୟ ତା ସ୍ଥିର କଲଣି (ନନ୍ଦଙ୍କ ପ୍ରତି) ମହାରାଜ ! ଚିନ୍ତା କରନ୍ତୁ ନାହିଁ, ମୁଁ ଏ ରୋଗ ଅରୋଗ୍ୟଭଳି ଔଷଧ ପଠାଇ ଦେଉଛି, ସେବନମାତ୍ରେ କୃଷ୍ଣପୁ ଭଲ ହୋଇଯିବ ।

ନନ୍ଦ—ବୈଦ୍ୟ ମହାଶୟେ ! ଶୀଘ୍ର ଔଷଧ ପଠାଇ ଦଅନ୍ତୁ, କୃଷ୍ଣ ମୋର ଭଲ ହେଲେ ଯଥାର୍ଥ ପୁରସ୍କାର ଦେଇ ଆପଣଙ୍କୁ ସନ୍ତୋଷ କରିବ ।

କୃଷ୍ଣ ଦାସ—ଯେ ଆଜ୍ଞା ! ( ବସ୍ତୁ ଦାସ କୃଷ୍ଣ ଦାସ ପ୍ରତି-ଦକ୍ଷିଣ ହସ୍ତ ବୃଦ୍ଧାଙ୍ଗୁଳି ଟେକି ) ଏ ରୋଗ ଛିଣ୍ଡିବା ବଡ଼ କଷ୍ଟ; ଚାଲ, ଚାଲ, ଆମ୍ଭେ ଡିଆଁ ପଡ଼ିବା ଭଲ ନୁହେଁ । ଏଠାରୁ ଖସିଲେ ହିଁ ରକ୍ଷା ଅଛି । ଚାଲ ଚାଲ ।



[ ପ୍ରସ୍ଥାନ ]

( ବୋଲ୍ଗରେ ନାରଦଙ୍କ ପ୍ରବେଶ )

ଗୀତ ।

( କୀର୍ତ୍ତନ ରାଗିଣୀ )

ଲୀଳାମୟଙ୍କର ଲୀଳା କେ ବୁଝି ପାରିବ ?
ଯାହାର ଅନ୍ତ ନ ପାନ୍ତି ବ୍ରହ୍ମା ଶେଷ ଶିବ ।
( ଛାର ମାନବ ହୋଇ ) କେ ବୁଝି ପାରିବ ତାଙ୍କ ଭାବ ।୧।
ଯାହାର ମହିମା ଦେବଙ୍କ ବୁଦ୍ଧିର ବାହାର ନାମ ଅନନ୍ତ ।
ତାଙ୍କୁ କି ମାନବ ବୈଦ୍ୟ ହୋଇ କେହି ମାତ୍ରାନ୍ତର କରେ ଶାନ୍ତ ।
( ଏ ତ ବଡ଼ ବଟିକ ) ଲୀଳାମୟ ଜାଣେ ତା ଲୀଳା ମାତ୍ର ।୨।
ଭକ୍ତ ହୃଦେ ଭକ୍ତବତ୍ସଳ ଶ୍ରୀହରି ଭବେ ହୋଇଛନ୍ତି ଜାତ ।
ଭକ୍ତଙ୍କ ପାଇଁ ମା ଭକ୍ତଙ୍କ ବଡ଼ିମା ରଖନ୍ତି ଏ କଥା ସତ୍ୟ ।
( ଭକ୍ତ ଭାବରେ ବଶ ) ଭକ୍ତହୃଦେ ସଦା ଯାହାର ବାସ ।୩।

ଯାର ନାମ ମହା ଔଷଧ ଅଟଇ ଏ ଭବେ ଭବ ରୋଗକୁ ।
ସେ ଆଜ ଚୈତନ୍ୟ ହରାଇ ପଡ଼ିଛ ଭକ୍ତ ତ୍ରାଣ ରଖିବାକୁ ।
( ରାଧା କଳଙ୍କ ବାଧା ) ଘୁଞ୍ଚାଇବାଲାଗି ହିନା ଏ ଧନ୍ଦା ।୮।



ନାରଦ—(କୃଷ୍ଣଙ୍କ ପ୍ରତି ଦୃଷ୍ଟି କରି ସ୍ୱଗତଃ) ଅହା ! ଲୀଳାମୟଙ୍କର କି ଖେଳା ଲୀଳା ! ଯେ କି ବାଧିର ବାଧି, ସର୍ବ ଗୁଣର ଗୁଣନିଧି, ପାର କରନ୍ତି ଭବ ଜଳଧି, ଭବ ଭାବନ୍ତି ଯାହାଙ୍କୁ ନିରବଧି, ଯାହାଙ୍କ ନାମରେ ଭବ ବ୍ୟାଧି, କାଳ ବ୍ୟାଧି, ଜଠର ବ୍ୟାଧି ପାଏ, ସେହି ଭବ-ରୋଗ ବିନାଶକାରୀଙ୍କ କପଟ ଜ୍ୱରକୁ ସାମାନ୍ୟ ମାନବ ବୈଦ୍ୟ ହୋଇ ପାରେ ? ଧନ୍ୟ ଭଗବାନଙ୍କର ଖେଳା ଲୀଳା ! ( ପ୍ରକାଶ୍ୟେ ) ଗୋପରାଜ ! ତୁମ୍ଭ ପୁତ୍ରର ରୋଗ ଅନ୍ୟ କୌଣସି ଔଷଧରେ ଭଲ ହେବ ନାହିଁ । ଯଦି କେହି ହରି ଭକ୍ତ ହରି ନାମ ଔଷଧରେ ବ୍ୟବସ୍ଥା କରେ ତେବେ ଏ ରୋଗ ଭଲ ହୋଇପାରେ, ନତୁବା ଅନ୍ୟର ଅସାଧ୍ୟ ।

ନନ୍ଦ—ପ୍ରଭୋ ! ହରି ନାମ ଔଷଧରେ କଣ ଏତେ ଗୁଣ !

ନାରଦ—ମହାରାଜ ! ହରି ନାମ ଔଷଧର ଯେତେ ଗୁଣ, ତା ତୁମ୍ଭଙ୍କୁ କଣ କହିବି ? ସ୍ୱର୍ଗ ନରକର ଯେତେଦୂର ପ୍ରଭେଦ, ହରିନାମଔଷଧରେ ଅନ୍ୟଔଷଧରେ ସେତେ ଦୂର ପ୍ରଭେଦ ଦେଖ, ଦେବାଧି ଦେବ ମହାଦେବ ଏହି ହରି ନାମ ଔଷଧ ସେବନ କରି ମୃତ୍ୟୁକୁ ଜୟକରି ମୃତ୍ୟୁଞ୍ଜୟ ନାମ ଧାରଣ କରିଛନ୍ତି ।

ନନ୍ଦ—ହରିନାମ ଔଷଧ ଯାହାଙ୍କ ପାଖରେ ଅଛି, ସେ ବୈଦ୍ୟଙ୍କର ଦର୍ଶନ ପାଇବି କେଉଁଠି ?

ନାରଦ — ଏହିଠାରେ ବସିକରି ତାଙ୍କର ଦେବଗାଥାଗାଇ ଧନ୍ୟ, ଭକ୍ତ-
ମାନେ ଏକମନେ ଏକଧ୍ୟାନେ ନପୃନ ବୁଲ ହରିନାମ
କୀର୍ତ୍ତନ କର, ତେବେ ଏହିକ୍ଷଣି ସେ ଆସି ଉପସ୍ଥିତ
ହେବେ: ସନ୍ଧ୍ୟା ସମାଗତ, ମୁଁ ଅଶ୍ରମକୁ ଯାଉଛି । (ପ୍ରସ୍ଥାନ)

ନନ୍ଦ — (ସମସ୍ତଙ୍କ ପ୍ରତି) ଦେବର୍ଷି ନାରଦ ଯାହା କହିଲେ, ଆସ ଆମ୍ଭେ-
ମାନେ ତାହାହିଁ କରିବା ।

ସମସ୍ତେ — (ଉଚ୍ଚସ୍ୱରେ ବାଦ୍ୟ ଯନ୍ତ୍ର ଧରି ହରିନାମ କୀର୍ତ୍ତନ କଲେ)

ଗୀତ ।

ହରି ହରି ହରି ହରି ବୋଲ ସର୍ବଜନ ।
ହରିନାମେ ଘୁଞ୍ଚି ଯିବ ରେ ସର୍ବ ରୋଗମାନ ॥
(ହରି ହରି ବୋଲ ରେ) ଭାଇ ! ହରି ହରି ହରି ହରି
(ହରି ହରି ବୋଲ ରେ) ଭାଇ ! ହରି ହରି ହରି ହରି ।ପଦ।
ହରି ନାମେ ପ୍ରହଲ୍ଲାଦ ଧ୍ରୁବ ଅଧିକାରୀ ।
କେତେ ଭକ୍ତେ କେତେ ଶଙ୍କାରୁ ଛନ୍ତି ତରି ॥
(ହରି ହରି ବୋଲ ରେ) ଭାଇ ! ହରି ହରି ହରି ହରି ।୨।

( ସମସ୍ତେ ଉଦ୍ଦଣ୍ଡ ବାଦ୍ୟ ତାନମାନ ଓ ଉଚ୍ଚସ୍ୱରେ ଗାଇଲେ )

ପରଦା ପତନ ।



# ଦ୍ୱିତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ—ଗୋପପୁର ପଥ ।

( ଗୀତ ଗାଇ ଗାଇ ଶ୍ରୀକୃଷ୍ଣ ବୈଦ୍ୟ ବେଶରେ ଔଷଧ ହସ୍ତେ ପ୍ରବେଶ )

ଗୀତ ।

( ଝଙ୍କାଗ୍ର ଆଜ ଦୁଆରେ ଡ଼ାକେ—ବୃତେ । )

ଭକ୍ତଙ୍କୁ ମୋର ବିପତ୍ତି ପଡ଼ିଲେ ମୋତେ ତ ବଡ଼ ବାଧଇ ।
(ଯେଣୁ) ଭକ୍ତଙ୍କ ଭାବରେ ନିଶି ଦିବସରେ ମୁହିଁ ଭୋଳ ହୋଇଥାଇ
। ପଦ ।

ଭକ୍ତ ଚୂଡ଼ାମଣି ମୋର ଶ୍ରୀରାଧିକା,
କଳଙ୍କିନୀ ବୋଲି ବ୍ରଜେ ବାଜେ ଡ଼ଙ୍କା ।
ତାହା ଦୁଃଖ ମୋ ପରାଣେ ବାଜେ ଧକ୍କା,
ଏ ଭିଆଣ ଏଥିପାଇଁ । ୧ ।
ନନ୍ଦସୁତ ରୂପେ ପଡ଼ିଛି ମୁଁ ଜ୍ୱରେ,
ଏବେ ଯାଉଅଛି ଏ ବୈଦ୍ୟ ବେଶରେ ।
ରଚିବି ଉପାୟ ଜୟ ରାଧେ ଜୟ
ଘୋଷଣେ କରିବି ମହୀ । ୨ ।
(ସେହି) ସତୀ ହସ୍ତେ ସସ୍ର ଛିଦ୍ର କୁମ୍ଭେ ନୀର,
ଅଣାଇବି ଏହି ପ୍ରତିଜ୍ଞା ମୋହର ।
ଜଟିଳା କୁଟିଳା ଦୁହିଁଙ୍କି ଅସତୀ
ବୋଲି ମୁଁ ଦେବି ଚହଲାଇଁ । ୩ ।
ନିଜ ଇଚ୍ଛାରେ ମୁଁ ହୋଇଅଛି ରୋଗୀ,
ପୁଣି ସ୍ୱଇଚ୍ଛାରେ ଉଠିବି ମୁଁ ଜାଗି ।
ସକଳେ ଜାଣିବେ ରାଧା ସଦ୍ଭାଗୀ,
(ତାର) କଳଙ୍କ ଦେବି ଘୁଞ୍ଚାଇ । ୪ ।



ବୃନ୍ଦା—( ହର ବୈଦ୍ୟଙ୍କୁ ଦେଖି ) ସଖିଗଣ ! ଦେଖ ଦେଖ କେଉଁଠୁ ଜଣେ ପଦୁଟନରୁ ନବୀନ ବୈଦ୍ୟ ପବିତ୍ର ଔଷଧ-ପାତ୍ର ହସ୍ତେ ଆସି ଉପସ୍ଥିତ ହେଲେଣି । ଆହା ଯେପରି ଆମ୍ଭ-ମାନଙ୍କ ବ୍ରଜବହାସ୍ତ ବ୍ରଜବେଶ ତ୍ୟାଗ କରି ନବୀନ ବୈଦ୍ୟ ବେଶ ଧାରଣ କରିଅଛନ୍ତି ।

ଲଳିତା—ସଖି ! ଠିକ କହିଲ, ଏହି ନବୀନ ବୈଦ୍ୟ ଆମ୍ଭମାନଙ୍କର ବାଞ୍ଛଶ୍ୟାମ ନ ହେଲେ, ଯାଙ୍କର ନୟନ ବଙ୍କା, ଅଙ୍ଗ ବଙ୍କା, ଗୃହଚଳଣୀ ବଙ୍କା ହୁଅନ୍ତା କାହିଁକି ? ଯାହାହେଉ ଭଉଣି ! ପରଚୟ ପଚାର ।

ବୃନ୍ଦା—ସତ କହିଲ ସଖି । ( ବୈଦ୍ୟଙ୍କ ପ୍ରତି ) ଅହେ ନବୀନ ବୈଦ୍ୟ ! ତୁମ୍ଭର ନିବାସ କେଉଁଠି ? ତୁମ୍ଭ ନାଁ କଣ ? କେଉଁଠୁ ଆସିଛ ? ଆମ୍ଭମାନଙ୍କୁ କହ ।

ବୈଦ୍ୟ—ଆମ୍ଭର ନିବାସ ହରପୁର, ନାମ ହର ବୈଦ୍ୟ, ଆସିଛୁ ହରି ପୁର ଠାରୁ ହରି ଦର୍ଶନେ ।

ବୃନ୍ଦା—ଅହେ ବୈଦ୍ୟରାଜ ! ତୁମ୍ଭର ଆକୃତି ପ୍ରକୃତି ଦେଖି ବୋଧ ହେଉନାହିଁ ଯେ ତୁମ୍ଭେ ଭଲ ବୈଦ୍ୟ, ତୁମ୍ଭେ ଯେ କବିରଦ୍ୟା ସାଧିଅଛ, ଏ କଥା ବିବେଚନା ହୁଏ ନାହିଁ, ତାହା-ହେଲେ ତୁମ୍ଭେ ହରପୁର ଠାରୁ ଏତେ ଦୂର ଚାଲି ଚାଲି ଆସନ୍ତ କାହିଁକି ? ଗଜରେ, ଅଶ୍ୱରେ, ଶକଟରେ କିମ୍ବା ପାଲିକରେ ଚଢ଼ି ଆସନ୍ତ । ଯେଉଁମାନେ ଭଲବୈଦ୍ୟ, ସେମାନେ କେବେ ତମପର ପାଦରେ ଗମନାଗମନ କରନ୍ତି ନାହିଁ । ତୁମ୍ଭ ବ୍ୟବ-ହାରରୁ ତୁମ୍ଭଙ୍କୁ କୁତ୍ସିତ ବୈଦ୍ୟ ବୋଲି ଜ୍ଞାନ ହେଉଛି, ଏପରି ବୈଦ୍ୟମାନଙ୍କର ଗୁଣ ଆମ୍ଭେମାନେ ଭଲକରି ଜାଣୁ, କିଷ ବୈଦ୍ୟମାନେ ଏକପ୍ରକାର ଯମଦୂତ ପରି !

ଦ୍ୟ—ଆମ୍ଭର ବିଦ୍ୟା ଅଛି କି ନାହିଁ ତୁମ୍ଭେ କିପରି ଜାଣିଲ ଯେ
ଏପରି ବ୍ୟଙ୍ଗୋକ୍ତି କରୁଅଛ ? ଅମ୍ଭେ ଉତ୍ତମ ବୈଦ୍ୟ କି
ନା ପରୀକ୍ଷା କର ।

ନ୍ଦା—ଅଚ୍ଛା ତେବେ କହିଲ ଦେଖି—

ତରୁଣ ଜ୍ୱରରେ କିସ କର ହେ ବ୍ୟବସ୍ଥା ?

ବୈଦ୍ୟ—ସେଥିପାଇଁ କର୍କଟୀ ଏ ଆୟୁର୍ବେଦ କଥା ।

ବୃନ୍ଦା—ତ୍ରିଦୋଷ ଜ୍ୱରରେ ଦିଅ କେଉଁ ଔଷଧ ?

ବୈଦ୍ୟ—ଜ୍ୱରାନ୍ତକ ଜୟମଙ୍ଗଳ ଏ ଶାସ୍ତ୍ରର ବିଧି ।

ବୃନ୍ଦା—ପ୍ଲୀହାର ଔଷଧ କିସ କହ ଏବେ ପୁଣି ?

ବୈଦ୍ୟ—ତହିଁକି ଗୁଡ଼ ପିପ୍ପଳୀ ଏ ଶାସ୍ତ୍ରର ବାଣୀ ।

ବୃନ୍ଦା—ଗ୍ରୀଷ୍ମରୋଗକୁ ଔଷଧ କି ଜାଣିଛ କହ ?

ବୈଦ୍ୟ—ବାନ୍ଧିକା ଗୋଳ ପିଆଇ ଦେଉଁ ଦୁଗ୍ଧ ସହ ।

ବୃନ୍ଦା—ଗର୍ଭିଣୀ ରୋଗରେ କର କି ଅବଧାରଣ ?

ବୈଦ୍ୟ—ତହିଁକି ନୃପବଲ୍ଲଭ କରୁଁ ବିତରଣ ।

ବୃନ୍ଦା—ବାଳୁକାରେ ବାଳକଙ୍କୁ କି ଦିଅ ସାକ୍ଷାତେ ।

ବୈଦ୍ୟ—ସ୍ୱର୍ଣ୍ଣପଞ୍ଚପଟୀ ଦେଉଁ ମଧୁର ସହିତେ ।

ବୃନ୍ଦା—କାଶରୋଗେ କି ଔଷଧ କର ତୁମ୍ଭେ ଧାର୍ଯ୍ୟ

ବୈଦ୍ୟ—ତହିଁରେ ବାସକରସ କରୁଁ ଅବଧାର୍ଯ୍ୟ ।

ବୃନ୍ଦା—ପ୍ରମେହ ପୀଡ଼ାକୁ କହ ଔଷଧ କି ଏବେ ?

ବୈଦ୍ୟ—ଶାନ୍ତ ହୁଏ ମେହ ପୀଡ଼ା ସୋମନାଥ ରସେ ।

ବୃନ୍ଦା—କହ କି ପ୍ରକାରେ ଶୂଳରୋଗ ଭଲ କର ?

ବୈଦ୍ୟ—ଶୂଳଖଣ୍ଡ ନାରିକେଳ ଜଳେ ପ୍ରତିକାର ।

ବୃନ୍ଦା—ଉଦରୀରେ କିବା ଦିଅନ୍ତୁ ଏ କହ ପୁଣି ?

ବୈଦ୍ୟ—ତହିଁପାଇଁ ମାନଖଣ୍ଡ ଭଲେ ଅଛୁଁ ଜାଣି ।

ବୃନ୍ଦା—କିସ ଦେଲେ ରକ୍ତପିତ୍ତ ରୋଗ ହୁଏ ଭଲ ?

ବୈଦ୍ୟ—କୁଷ୍ମାଣ୍ଡଖଣ୍ଡ ତାହାର ସେବା ଅଟେ ମୂଳ

ବୃନ୍ଦା—ବାତରକ୍ତେ କି ଔଷଧି ଦିଅ କହ ଦେଖି ?

ବୈଦ୍ୟ—ଗୋମୂତ୍ରାଦି ପଞ୍ଚତିକ୍ତ ରସ ଦେଉଁ ସଖି !

ବୃନ୍ଦା—ବାତରୋଗ ଭଲ ହୁଏ କହ କେଉଁପରି

ବୈଦ୍ୟ—ଗୁଗ୍ଗୁଳେ ବାତର ଶାନ୍ତି ହୁଏ ଗୋ ସୁନ୍ଦରି !

ବୃନ୍ଦା—ଅସାଧ୍ୟ ରୋଗର କହ ଔଷଧି ଲକ୍ଷଣ ?

ବୈଦ୍ୟ—ଅସାଧ୍ୟ ରୋଗରେ ଖାଲି କର ହରି ନାମ ।

ବୃନ୍ଦା—ମୁଷ୍ଟିଯୋଗ ଜାଣ କିଛି ବୈଦ୍ୟଗୁଣ ଧାମ !

ବୈଦ୍ୟ—କିଛି କିଛି ଜଣା ଅଛି କହୁଛି ପ୍ରମାଣ ।

ବୃନ୍ଦା—ଅହେ ବୈଦ୍ୟ ! ତୁମ୍ଭର ବ୍ୟବସ୍ଥା ଶୁଣି ସନ୍ତୋଷ ହେଲୁଁ, ତୁମ୍ଭେ କେଉଁ ଶାସ୍ତ୍ରମତରେ ଚିକିତ୍ସା କର ?

ବୈଦ୍ୟ—ମୁଁ ନିଦାନ ବ୍ୟବସାୟୀ, ନିଦାନ ଶାସ୍ତ୍ରମତେ ଚିକିତ୍ସା କରେଁ ।

ବୃନ୍ଦା—ଯଦି ତୁମ୍ଭେ ନିଦାନ ବ୍ୟବସାୟୀ, ତେବେ ଆମ୍ଭର ଗୋଟିଏ ମହତ ରୋଗ ଅଛି; ଦୟାକରି ସେହି ରୋଗର ଔଷଧି କହିଦେଲେ ବଡ଼ ଉପକାର କରିବ ।

ବୈଦ୍ୟ—ଅଗ ନନ୍ଦପୁଅ ହରିଙ୍କି ନ ଦେଖି ଅଉ କାହାକୁ ଦେଖିବ ନାହିଁ ।

ବୃନ୍ଦା—ଏ ତ ମହତର କାର୍ଯ୍ୟ ନୁହେଁ, ତାର ସାକ୍ଷୀ ଦେଖ, ଗଙ୍ଗାର ପ୍ରଧାନ ଉଦ୍ଦେଶ୍ୟ ସଗରବଂଶ ଉଦ୍ଧାର, ସେହି ନିମନ୍ତେ ତାଙ୍କର ପୃଥିବୀକି ଆସିବାର, କିନ୍ତୁ ସେ ପୃଥିବୀରେ ଆସିବା ସମୟରେ ପଥ ମଧ୍ୟେ ଅନେକ ପାପୀ, ତାପୀ, କୀଟ, ପତଙ୍ଗ, ପଶୁ, ପକ୍ଷୀ, ସମସ୍ତଙ୍କୁ ପବିତ୍ର କରି ଉଦ୍ଧାର କରିଅଛନ୍ତି । ତୁମର ମଧ୍ୟ ସେହିରୂପେ କରିବା ଉଚିତ ।

ବୈଦ୍ୟ—ଅଚ୍ଛା ଭମର କ ରୋଗ କହ ?

ବୃନ୍ଦା—ଅମଙ୍କୁ କାଳରୋଗ ଧରିଛି, ଏ କାଳରୋଗ ଆଉ କୌଣସି ଉପାୟରେ ଯାଉ ନାହିଁ ।

ବୈଦ୍ୟ—କାହିଁକି ଯିବ ନାହିଁ, ଥଣ୍ଡା ଚକିତ୍ସା କହ ।

ବୃନ୍ଦା—କଣ ଦେଇ ଥଣ୍ଡା କରିବୁଁ ?

ବୈଦ୍ୟ—କାଳନ୍ଦୀର କଳା ଜଳରେ ପ୍ରତ୍ୟହ ସ୍ନାନ କର, ଅଉ କଳା ପୁରୁଷଙ୍କ ସଙ୍ଗ କର, ତେବେ ରୋଗ ଶାନ୍ତ ହେବା ଯାଉ, ଏ ସବୁ କଥାରେ ଅଉ ଦରକାର ନାହିଁ । ମୂର୍ଚ୍ଛିତ ହୋଇ କୃଷ୍ଣ କେଉଁଠାରେ ପଡ଼ିଅଛନ୍ତି ଅମ୍ଭଙ୍କୁ ଦେଖାଅ ।

ବୃନ୍ଦା—ଅସ, ଅମ୍ଭ ସଙ୍ଗରେ ଅସ ।

[ ସମସ୍ତେ ପ୍ରସ୍ଥାନ ]

## ପଟ ପରିବର୍ତ୍ତନ ।



## ଦ୍ୱିତୀୟ ଅଙ୍କ ।

### ଦ୍ୱିତୀୟ ଦୃଶ୍ୟ—ନନ୍ଦାଳୟ ଅପରପାର୍ଶ୍ୱ ।

( ମୂର୍ଚ୍ଛିତ କୃଷ୍ଣଙ୍କ ନିକଟ ଯଶୋଦା, ରୋହିଣୀ ଇତ୍ୟାଦି ଦୁଃଖମନରେ ବସିଥିବା, ଲଳିତା, ବିଶାଖା, ବୃନ୍ଦା ଓ ବୈଦ୍ୟଙ୍କ ପ୍ରବେଶ )

ବୃନ୍ଦା—( ଯଶୋଦାଙ୍କ ପ୍ରତି ) ଅଗୋ ମା ନନ୍ଦରାଣୀ ! କାହ୍ନୁଙ୍କୁ ଭଲ କରିବାକୁ ଜଣେ ବୈଦ୍ୟ ଅସିଅଛନ୍ତି, ଯାଙ୍କ ନାମ ହରି ବୈଦ୍ୟ ।

ଯଶୋଦା—( ହରି ବୈଦ୍ୟଙ୍କୁ ଦେଖି ସ୍ୱଗତଃ ) ଇଏ କିଏ ! ଏ ବୈଦ୍ୟଙ୍କୁ ଦେଖି ହଠାତ୍ ମୋ ହୃଦୟରେ ବାତ୍ସଲ୍ୟ ସ୍ନେହ

ଜାତ ହୋଇଛନ୍ତି କାହିଁକି ? ତେବେ କଣ ଏହି ବଇଦ୍ୟ ମୋର ଜୀବନସର୍ବସ୍ୱ ଧନ ନୀଳରତନ ! ତାହାହିଁ ନହେଁ, ତା' ନ ହେଲେ ବଙ୍କା ଅଙ୍ଗ—ବଙ୍କା ନୟନ, ହେବ କାହିଁକି ? ଶ୍ୟାମ ବସନ ଭୂଷଣ ସିନା, ନଇଲେ ଅକୃତ ପ୍ରକୃତ ମୋ କାହ୍ନୁଧନ । (ପ୍ରକାଶ୍ୟ) ବଇଦ୍ୟ ! ତୁମ୍ଭେ କଣ ମୋ କାହ୍ନୁକୁ ଭଲ କରି ପାରିବ ? ତୁମ୍ଭେ ଯଦି କାହ୍ନୁକୁ ଭଲ କରିପାର, ମୋ ଭଣ୍ଡାରରେ ଯେତେ ଧନ ଅଛି ସବୁ ଦେବି । ନୀଳମଣିର ସମତୁଲ୍ୟ ନୀଳମଣି ଦେଇ ତମର ମନ ସନ୍ତୋଷ କରିବି ।

ବୈଦ୍ୟ—ମା ! ତୁମ୍ଭେ ଭୟ କର ନା, ମୁଁ କୃଷ୍ଣଙ୍କୁ ବଞ୍ଚାଇ ଦେବି ତୁମ୍ଭେ ଔଷଧର ଅନୁପାନ ଶୀଘ୍ର ଯୋଗାଡ଼ କରି ଦିଅ ।

ଯଶୋଦା—କି ଅନୁପାନ ଯୋଗାଡ଼ କରିବି କହିଲ ଧନ ?

ବୈଦ୍ୟ – ଅକ୍ଷୟବଟର ମୂଳ ଅଉ ପାରିଜାତବୃକ୍ଷର ଫୁଲ ।

ଯଶୋଦା—ବଇଦ୍ୟ ! ଦେବତାଙ୍କ ଅସାଧ୍ୟ କାର୍ଯ୍ୟ ଗୋପାଳଙ୍କଦ୍ୱାରା କିରୂପେ ସମ୍ପନ୍ନ ହେବ ? ଅନ୍ୟ କିଛି ଉପାୟ ଥିଲେ କହ ?

ବୈଦ୍ୟ—ଅନ୍ୟ ଉପାୟ ନାହିଁ ଯେ ଏପରି ନୁହେଁ, ତେବେ ଶୀଘ୍ର ଗୋଟିଏ ମୃତ୍ତିକାର ଘଟ ଅଣାଅ ।

ଯଶୋଦା—(ବୃନ୍ଦାଙ୍କ ପ୍ରତି) ବୃନ୍ଦେ ! ଶୀଘ୍ର ଗୋଟିଏ ମୃତ୍ତିକାର ପାତ୍ର ନେଇ ଆସ ।

ବୃନ୍ଦା—ଯେ ଆଜ୍ଞା, (ଏହା କହି ପ୍ରସ୍ଥାନ) ।

ଯଶୋଦା—(ବୈଦ୍ୟଙ୍କ ପ୍ରତି) ପ୍ରାଣାଧିକ ! ମୋର ପ୍ରାଣାଧିକ କାହ୍ନୁ ଭଲ ହେବ ତ ? କାହ୍ନୁକୁ ଅଚୈତନ୍ୟ ଦେଖି ମୁଁ ମଧ୍ୟ ଅଚୈତନ୍ୟ ହୋଇଛି । ସମସ୍ତ ଅନ୍ଧକାର ଦେଖୁଛି; ବଇଦ୍ୟ ! ବେଟି କଣ କହିବି ? ନୀଳମଣି ମୋର

ଜୀବନସର୍ବସ୍ୱ ଧନ, ନୟନର ତାରା, ହୃଦୟାକାଶର ଚନ୍ଦ୍ର, ଜୀବନ ମରୁଭୂମିର ସୁଖ କଳ୍ପତରୁ, ସ୍ନେହ ଉଦ୍ୟାନର ସୁଗନ୍ଧ ପୁଷ୍ପ, ଚନ୍ତା-ସରୋବରର ବିକସିତ କମଳ। ଫଣୀର ଯେପରି ମଣି, ମୋର ସେହିପରି ନୀଳମଣି, ମୁଁ ଶୟନେ, ସ୍ୱପନେ, ଭୋଜନେ, ଗମନେ, କେବଳ ବତ୍ସ ଚନ୍ଦ୍ରମୁହିଁକି ଦେଖୁଥାଏଁ। ଆଜ ସେଥିରୁ ବଞ୍ଚିତ ହୋଇଛି। ମୁଁ ଯେ ନୀଳମଣି ଭିନ୍ନ କିଛି ମାତ୍ର ଜାଣେ ନାହିଁ। ନୀଳମଣି ଏକ ମାତ୍ର ମୋର ଭଜନ, ପୂଜନ, ଜପ, ତପ, ଧ୍ୟାନ, ଜ୍ଞାନ। ମୁଁ ବହୁକାଳରୁ କାତ୍ୟାୟିନୀ ବ୍ରତ କରି ନୀଳମଣିଙ୍କ ପାଇଥିଲି, ଯାହାଙ୍କୁ ପଲକେ ହରାଇଲେ ପ୍ରଳୟଜ୍ଞାନ ହୁଏ, ଯାହାଙ୍କୁ ହବାନ୍ତିଶି ଛାତିରେ ରଖି ଦୁଃଖ ଦୂର କରୁଥାଏଁ, ସେହି ଜୀବନସର୍ବସ୍ୱ ଧନଟି ମୋର ଏବେ ଧରାତଳେ ପଡ଼ିଛି, ଏହା କି କେତେବେଳେ ମାଆର ପ୍ରାଣରେ ସହ୍ୟ ହୁଏ ?

ବୈଦ୍ୟ—ଯଶୋମତି ! ତୁମ୍ଭେ ଆଉ ବିଳାପ କର ନା, ମୁଁ ଯେତେବେଳେ ଆସିଛି, ତୁମ୍ଭ ପୁତ୍ରଙ୍କୁ ନିଶ୍ଚୟ ଭଲ କରିଦେଇ ଯିବି, ତୁମ୍ଭେ ନିଶ୍ଚିନ୍ତା ହୁଅ।

[ ଘଟ ହସ୍ତେ ବୃନ୍ଦା ପ୍ରବେଶ ]

ବୃନ୍ଦା—ବୈଦ୍ୟ ମହାଶୟ ! ଘଟ ଆଣିଛି ଗ୍ରହଣ କରନ୍ତୁ।

ବୈଦ୍ୟ—ଦିଅ ( ଘଟ ଗ୍ରହଣ କରି ତହିଁରେ ସହସ୍ର ଛିଦ୍ର କରି ) ମା ଯଶୋମତି ! ଏ ବ୍ରଜର କୌଣସି ସତୀରମଣୀ ଯଦି ଏହି ଛିଦ୍ର ଘଟରେ ଜଳ ଆଣିଦେଇ ପାରେ, ତେବେ ତୁମ୍ଭର ପୁତ୍ରଙ୍କୁ ଭଲ କରିଦେବି, ନଇଲେ ମୋର ଅସାଧ୍ୟ, ଛିଦ୍ରଘଟ ଜଳ ଭିନ୍ନ ଅନ୍ୟ ଜଳରେ ଔଷଧ ବାଟି ସେବନ କରାଇଲେ ତୁମ୍ଭ ପୁତ୍ର କେତେମାତ୍ର ଭଲ ହେବ ନାହିଁ।

[ କୁଟିଳା ପ୍ରବେଶ ]

କୁଟିଳା—ଅହେ ନବୀନ ବୈଦ୍ୟ ! ଏ ବ୍ରଜରେ ଅଉ କିଏ ସତୀ ଅଛି ? ମୁଁ ସତୀ, ଆଉ ମୋର ମାଆ ସତୀ, ଆଉ ସତୀ କେହି ନାହିଁ । ଏହି ଯେତେଗୁଡ଼ାଏ ଯୁବତୀ କୁଳବତୀ ଦେଖୁଛ, ଏମାନେ ସମସ୍ତେ କୁଳକଳଙ୍କିନୀ, ଏ ପାପିନୀମାନଙ୍କର ଛାୟା ସ୍ପର୍ଶ କଲେହିଁ ପାପ ହୁଏ । ବୃନ୍ଦାବନରେ ଏହି ବାନରୀମୁଖି ବୃନ୍ଦାକୁ ବଣବାସ ଯିବନାଇଁ । ଏମାନେ କଣ ଛିଦ୍ରଘଟରେ ଜଳ ଅଣି ପାରିବେ ? ମତେ ଦିଅ, ମୁଁ ଜଳ ଅଣୁଛି ।

ବୈଦ୍ୟ—ଏହି ନିଅ ( ଛିଦ୍ରଘଟ ପ୍ରଦାନ )

କୁଟିଳା—( ଘଟ କକ୍ଷେ କରି ପ୍ରସ୍ଥାନ )

ବୃନ୍ଦା—ସଖି ଲଳିତେ ! ଏ ପୋଡ଼ାମୁହିଁ କୁଟିଳା କଥା ଶୁଣିଲ ? ଅମେମାନେ ଅସତୀ, ଏ ମା ଝିଅ ପୁଣି ସତୀ ।

ଲଳିତା—ସଖି ! ଦର୍ପହାରୀ ଭଗବାନ କାହାରି ଦର୍ପ ରଖନ୍ତି ନାହିଁ, ଟିକିଏ ସବୁର କର, ଏହିକ୍ଷଣି ଦେଖାଯିବ, କୁଟିଳା ଯେପରି ସତୀ, ଏଇନେ କଷଜଳ ଚକ୍ଷୁରେ ଘେନି ଆସିବ ।

ଯଶୋଦା—( ବୈଦ୍ୟ ପ୍ରତି ) ବତ୍ସ ! ସତ୍ୟକରି କହ, ପୁତ୍ର ମୋର ବଞ୍ଚିବ ତ ? ସତେ ନୀଳମଣି ମା ମା ବୋଲି ଡ଼ାକିବ ? ସତେ ଧନ ମୁଖରେ ସରଲବାଣୀ ଦେବ ?

ବୈଦ୍ୟ—କିଛି ଚିନ୍ତା କରନା ମା !

[ ଶୂନ୍ୟଘଟେ କୁଟିଳାର ପ୍ରବେଶ ]

କୁଟିଳା—(ସ୍ୱଗତଃ) ଏ ମା, ଛିଃ ଛିଃ ଲଜ୍ଜାରେ ମଲି । ସତୀ ପେଟରୁ ଜନମ ହୋଇ ଜଳ ଅଣିପାରିଲି ନାହିଁ । ମା ପାଖରେ ମୁଁ ଏ ମୁହଁ କେମିତି ଦେଖେଇବି ? ଭାଇ ଶୁଣିଲେ ବା କଣ କହିବ ? କଳଙ୍କିନୀ ରାଧା ମୋତେ କଣ କହିବ ? ଛିଃ, ଛି, ବ

ଘୃଣା, କି ଲଜ୍ଜା, ବସୁଧା ଫାଟୁଯା, ମୁଁ ତୋର ଗର୍ଭରେ ଲୁଚି ଯାଏଁ ଦେବଲେ ।

ବୃନ୍ଦା } —(କରତାଳିମାରି) ଆ ହା ହା ! ସତୀ ଗୋ ସତୀ, ବଗ-
ଲଳିତା }

ବୋଢ ! ଛି, ଛି ।

( ଜଟିଳା ପ୍ରବେଶ )

ଜଟିଳା—( ସ୍ୱେଷଭରେ ) ହାଁ ଲୋ ପୋଡ଼ାମୁହିଁ, କୁଳ ଖାଗି, ଅଭାଗିନୀ, ସର୍ବନାଶୀ, ଗଳାରେ ଦଉଡି ଦେଉ ନାହୁଁ ? ଛିଃ, ଛିଃ ! ତୁ ସତୀ ପେଟରୁ ଜନମ ହୋଇ ଏଇ ଛାର ଜଳାମାଠିଆଟାରେ ପାଣି ଆଣି ପାରିଲୁ ନାହିଁ ? ହାଁ ଲୋ କୁଳବୁଡ଼େଇ, ତୁ ମୋ କୁଳରେ କାଳି ଦେଲୁ ? ଆଗେ ଯଦି ଜାଣିଥାଆନ୍ତି ତୁ ଏପରି ହେବୁ ବୋଲି, ତା’ ହେଲେ ଅନ୍ତୁଡ଼ିଶାଳରୁ ଚଣ୍ଟି ଚିପି ଦେଇଥାଆନ୍ତି, ମୁଁ ମନେ କରିଥିଲି ମୋ ଝିଅଟି ଲକ୍ଷ୍ମୀବନ୍ତୀ ସତୀସାଦ୍ଧ୍ୱୀ ବୋଲି, ଏ ମା ତା’ ସବୁ କିଛି ଜଣାଗଲା ନାହିଁ, ସବେ ହଜାରେ ଲୋକରେ ଚଢ଼ା ପକେଇ ଦେଲୁ, ଛିଃ, ଛି, କି ଲଜ୍ଜାର କଥା ? ମୁଁ ମରିଯାନ୍ତି ହେଲେ ? ହଇଲୋ ! ତୋ ପରି ତ ମୁଁ ପରପୁରୁଷ କାହାକୁ କ ଗୁହିଁ ସମସ୍ତ ନେଇଚି, କାଇଁ ମୁଁ ତ ଘରୁ ବୁଆ ଡ଼େ ହେଲେ ବାହାରିନାହିଁ, ଏପରି କି ସୂର୍ଯ୍ୟଦେବ ମଧ୍ୟ ମୋ ମୁଖକୁ ଚାହିଁ ପାରି ନାହାନ୍ତି, ତୋପରି ମଧ ଏବେ ସାଜସଜ୍ଜା ନାହୁ ନ ଥିଲି, ମୋର ତ ଏବେ ରଙ୍ଗ ଢଙ୍ଗ ନ ଥିଲା । ବାଟରେ ଘାଟରେ ହଦନେ କାଳେ ହେଲେ ବୁଲୁ ଫୁଲେଇ ହେଲେଇ ଗେଲେଇ ହୋଇ ଗୁଲି ନାହିଁ । ଏବେ ବେଳର ଟୋକି

ଗୁରୁଙ୍କୁ କଣ ଲଜ୍ଜା ଅଛି ନା ସରମ ଅଛି ? ସାଜସଜ୍ଜାରେ ତ ବେଶ୍ ମନ, ଏମାନେ ସତୀ ହେବେ କୁଆଡ଼ୁ ? ଯେତେ କୁଳବତୀ ଯୁବତୀ ତିଳକଣ ଯୋଉ ପିନ୍ଧି ଓଠ ଗାଲକର ଘୋଙ୍କି ଅଡ଼େଇ ଅଡ଼େଇ ଅଡ଼ଚକ୍ଷୁରେ ଗୃହେ ବୁଲି ଠେଲି ଠେଲି ଯାଉଥାନ୍ତି, ଏଥିରେ କି କୁଳବତୀର କୁଳ ରହେ ? ହାଁରେ ! ମୁଁ ପୁଣି ତୋତେ କାଳିଆ କଳଙ୍କିନୀମାନଙ୍କ ପାଖରେ ଯିବାକୁ ମନା କରୁଥାଏଁ । କଳଙ୍କିନୀମାନଙ୍କ ପାଖରେ ରହି ତ କଳଙ୍କ ହେଲା । ହାଁରେ ! ବାରବୁଲି, ଥା, ଥା, ଅଜ ଘରକୁ ଗଲେ ତୋ କଥା ବୁଝିବ ଯେ ? ( ବୈଦ୍ୟ ପ୍ରତି ) ଆହେ ବୈଦ୍ୟ ! ଶୀଘ୍ର ଘଟ ଦିଅ, ମୁଁ ଜଳ ନେଇ ଆସେଁ ।

ବୈଦ୍ୟ — ନିଅ ( ଘଟ ପ୍ରଦାନ )

( ଛିଦ୍ର ଘଟ କାଖରେ ଘେନି କୁଟିଳା ବାହ୍ମ ଚିତ୍ର ମାତ୍ର ପ୍ରସ୍ଥାନ )

କୁଟିଳା—( ସ୍ୱଗତଃ ) ମୋତେ ଯେପରି ଅପମାନ କେଲୁ, ଯଦି ଧର୍ମ ଥାଏ ବିଚାର କରିବ, ମୁଁ ତ କଣା ମାଠିଆରେ ପାଣି ଆଣି ପାରିଲି ନାହିଁ, ଦେଖି ତୁ କେମନ୍ତ ଅଣୁଚୁ ଦଣ୍ଡ ।

ଚନ୍ଦ୍ରା—ଆଲୋ କୁଟିଳା ! ତୁ ପାଣି ଆଣିବାକୁ ଯାଇ ଆଖିରେ ଜଳ ପୂର୍ଣ୍ଣ କରି ଆସିଥିଲୁ, ତୋ ସତୀ ମା ଏଥର କାଖରେ ଜଳ-ଆଣିବ । ତୁ ଯେପରି ସତୀ ପଣ ଦେଖାଇଲୁ, ତୋର ସତୀ ମାଆ ମଧ୍ୟ ସେହିପରି ସତୀପଣ ଦେଖାଇବ, ଆଲୋ ! ଟିକିଏ ରହ, ଏହିକ୍ଷଣି ଦେଖିବୁ ତୋ ମାଆଟି କପରି ସତୀ କୁଟୀ ।

( ଜଳଶୂନ୍ୟ ଛିଦ୍ର ଘଟ କାଖେ ଘେନି ଜଟିଳାର ପ୍ରବେଶ )

ଜଟିଳା—( ସ୍ୱଗତଃ ) ଛି, ଛି ! ଲାଜରେ ମଲି । ମାଆ ଝିଅ ଦୁହିଙ୍କ କୁଳରେ କାଳି ଲାଗିଲା, ସତୀ ହୋଇ ଅସତୀ ହେଲୁଁ ।

( ମାଠିଆ ଥୋଇଦେଇ ଅଙ୍ଗୁଠି ଫୁଟାଇବା ଛଳେ )

ହାରେ ଦଇବ ! ମୁଁ ଏତେ କାଳର ସଖୀ, ଏଠେଇଁ ଅମଙ୍ଗ ବୋଲାଇଲି । ଛି, ଛି ! ମରିଯିବା ଭଲ ।

ବୃନ୍ଦା—ଅଟଗୋ ଜଟିଳେ ! ଏତେଦିନେ ତୋର ଗର୍ବ, ମାନ ମହତ୍ତ୍ୱ, କୁଳ, ଶୀଳ, ଦର୍ପ, ସତୀତ୍ୱ ସବୁ ଭସ୍ମ ହୋଇଗଲା । ହଇଲୋ ! ମାଆ ଝିଅ ଦୁହେଁ ଏତେ ଗରବ କରି ହାତ ମୁଦି ହଲେଇ ଅମ୍ଭମାନଙ୍କ ପାଖରେ ଯେଉଁ ସତୀପଣ ଦେଖାଉ-ଥିଲ, ସେ କୁଆଡ଼େ ଗଲା ? ଅଜି ସବୁ ଗରବ ଗାରିମା ଚୂନା ହୋଇଗଲା । ଧରମ ଥିଲେ ସବୁ ଚିହ୍ନା ପଡ଼ିଯାଇ ହଏ ।

ଯଶୋଦା—(ସ୍ୱଗତଃ) ହାୟ, ହାୟ ! ଭଗବାନ ! ମୋ ଜୀବନସର୍ବସ୍ୱ-ଙ୍କର ଦେହ ସତେ ଭଲ ହେବ ? ( ବୈଦ୍ୟ ପ୍ରତି ) ବତ୍ସ ! ଜଟିଳା କୁଟିଳା ତ ଛିଦ୍ର ଘଟରେ ଜଳ ଆଣି ପାରିଲେ ନାହିଁ, ମୁଁ କେବେଳେ ଜଳ ଆଣିବାକୁ ଯିବି ?

ବୈଦ୍ୟ—ମା ! ତୁମ୍ଭେ ଜଳ ଆଣିଲେ ତ ସେ ଜଳ ଗୁଣ କରିବ ନାହିଁ କାରଣ ମାତୃ ହସ୍ତେ ଔଷଧ ସେବନ ନିଷେଧ, ଏ ଶାସ୍ତ୍ରରେ, ଅଛି । ମା ! ତୁମ୍ଭେ କାନ୍ଦନା, ବ୍ରଜରେ କଣ ଆଉ ସତୀ ନାହାନ୍ତି ବୋଲି ମନେ କରୁଛ ? ଅବଶ୍ୟ ଅଛନ୍ତି । ମୁଁ ଜ୍ୟୋତିଷଗଣନା ମଧ୍ୟ ଜାଣେ, ଅଙ୍କ ପାତି କରି ଦେଖେଁ— ଏ ବ୍ରଜରେ ଅଉ କେହି ସତୀ ଅଛନ୍ତି କି ନାହିଁ ? ( ଭୂମିରେ ଅଙ୍କ ପାତ କରି ) ଅଗୋ ବ୍ରଜସୁନ୍ଦରୀଗଣ ! ତୁମ୍ଭମାନଙ୍କ ମଧ୍ୟରୁ କିଏ ଜଣେ ଏହି ଅଙ୍କ ଲେଖା ଉପରେ ହାତ ଦିଅ ତ ଦେଖି ।

ବୃନ୍ଦା—( କୃତ୍ରିମଭାବରେ ) "ର" ଉପରେ ହସ୍ତ ପ୍ରଦାନ ।

ବୈଦ୍ୟ—ଅଉ ଖୋଣ୍ଟିଆ ଉପରେ ହାତ ଦିଅ ଭଲା ।

ବୃନ୍ଦା—"ଧ" ଘରେ ହସ୍ତ ପ୍ରଦାନ ।

ବୈଦ୍ୟ—ମା ! ଗଣନାକରି ଦେଖିଲି, ଏହି ଗୋପରେ "ର" ଆଉ "ଧ" ଅକ୍ଷରରେ ଏକ ସତୀ ସୁନ୍ଦରୀ ଅଛି; ତା ହୃଦପୁରେ ଚକ୍ରଧର ବିରାଜମାନ ! ଭୂତ ଭବିଷ୍ୟତ୍ ତାକୁ ଜଣା । ସେ ସମସ୍ତ ବ୍ରଜସୁନ୍ଦରୀମାନଙ୍କ ଅପେକ୍ଷା ପରମା-ସୁନ୍ଦରୀ, କି ଧନ, କି ବୁଦ୍ଧି ସର୍ବଦା ସେ କେବଳ ଚନ୍ଦ୍ରା-ମଣିଙ୍କୁ ଧ୍ୟାନ କରିବାରେ ନିମଗ୍ନା ରହିଛି । ଏ ଗୋକୁଳରେ ସମସ୍ତେ ତାକୁ ରାଧା ବୋଲି ଡାକନ୍ତି । ତା ହାତରେ ଜଳ ଅଣିଲେ ଗୋପଚନ୍ଦ୍ରମଣି ଉଠି ବସିବେ । ତାକୁ ଶୀଘ୍ର ସମ୍ବାଦ ଦେଇ ଘେନି ଆସ ।

ଯଶୋଦା—(ବୃନ୍ଦା ପ୍ରତି) ବୃନ୍ଦେ ! ତୁମ୍ଭେ ଚଞ୍ଚଳ ଯାଇ ରାଧାଙ୍କୁ ଅଣ ।

ବୃନ୍ଦା—ମାଆଙ୍କର ଯେ ଆଜ୍ଞା (ଏହା କହି ପ୍ରସ୍ଥାନ)

କୁଟିଳା—(ଜଟିଳା ପ୍ରତି) ଏ ସର୍ବନାଶିଆ ବୈଦ୍ୟଟାର କଥା ଶୁଣିଲୁ ମା ! ଅମେ ହେଲେଁ ଅସତୀ । ଯେ କୃଷ୍ଣକଳଙ୍କିନୀ ବୋଲି କୁଳରେ କାଳି ନଗେଇଛି, ସିଏ ପୁଣି ହେଲା ସତୀ ।

ଜଟିଳା—ଅଲୋ କୁଟିଳା ! ଏ କାଳକୁ ସବୁ ବିପରୀତ ହେଉଛି ।

କୁଟିଳା—ମାଆ ମ ! ଦେଖାଯାଉ ଭଲା, କଳଙ୍କିନୀ ରାଧା କେମିତି କଣାମାଠିଅରେ ପାଣି ଅଣିବ; ସବୁ ଏଇଠେଇଁ ଜଣାଯିବ ।

[ ଶ୍ରୀରାଧାଙ୍କ ସହିତ ବୃନ୍ଦାଙ୍କ ପ୍ରବେଶ ]

ଶ୍ରୀରାଧା—(ବୈଦ୍ୟଙ୍କୁ ଦେଖି ସ୍ୱଗତଃ) ଅହା ! ରାଧାବଲ୍ଲଭ ରାଧାର କଳଙ୍କମୋଚନ ନିମନ୍ତେ ବ୍ରଜବେଶ ତ୍ୟାଗ କରି ବୈଦ୍ୟ-ବେଶ ଧାରଣ କରିଅଛନ୍ତି ! (ପ୍ରକାଶ୍ୟେ) ବୈଦ୍ୟରାଜ ! ଆପଣ ମୋତେ କାହିଁକି ଡ଼କେଇଅଛନ୍ତି ?

ବୈଦ୍ୟ—ଶ୍ରୀମତି ରାଧେ ! ଶ୍ରୀପତି ଯଶୋଦାନନ୍ଦନ ମୂର୍ଚ୍ଛାଗତ, ଏଥିପାଇଁ ଡ଼କାଇଅଛି ।

ଶ୍ରୀରାଧା—ବୈଦ୍ୟରାଜ ! ମୋ ଦ୍ୱାରା କଅଣ ହୋଇପାରିବ ?

ବୈଦ୍ୟ—ତୁମ୍ଭଦ୍ୱାରା ଏହି ଛିଦ୍ର ଘଟରେ ଜଳ ଆସିଲେ, ଯଶୋଦା ରାଣୀଙ୍କ ପୁତ୍ର ଭଲ ହେବେ, ନାଥ ଘଃ ନାଥ ।

(ଘଟ ପ୍ରଦାନ)

ଶ୍ରୀରାଧା—(ଛିଦ୍ର ଘଟ କକ୍ଷେ ନେଇ ଯୋଡ଼ହସ୍ତ) ହେ ହରି ! ହେ କମଳନୟନ ! ହେ ଦୟାମୟ ! ଛିଦ୍ରଘଟରେ ଜଳ ଆଣିବା କିଛି ଅସମ୍ଭବ ? ରାଧାନାଥ ହେ ! ମୋ ହୃଦୟ ଥରୁଛି, କାରଣ ଏ ବ୍ରଜରେ ରାଧା ଏକା କଳଙ୍କିନୀ ବୋଲି ଘୋଷଣା ହୋଇଛି, ଏ କଳଙ୍କିନୀ ହାତରେ ଜାହିଁକି କଳଙ୍କଘଟ ଦିଆଇଲ ପ୍ରଭୁ !

## ସ୍ତୁତି ।

(ସହି ଗୋ ! ଏ ରାଧାର ମରଣହିଁ ଶ୍ରେୟ ବୃନ୍ଦେ)

ଅଟହି କମଳନୟନ ଦୟାମୟ ହରି !

ଅଭାଗିନୀ ରାଧା ଅଟଇ କଳଙ୍କିନୀ ନାରୀ ହେ, ପ୍ରଭୁ ହେ !

ଏ ସହସ୍ର ଛିଦ୍ର କଳଶୀରେ, କପରି ଜଳ ଆଣିବି ଅସତୀ ହସ୍ତରେ ।

ଥରୁଛି ହୃଦୟ ନେତ୍ରୁଁ ଝରୁଛି ଲୋତକ ।

ଡ଼ରୁଛି କେବଳ ଅପନିନ୍ଦାକୁ ମାନିକ ହେ, ପ୍ରଭୁ ହେ !

କଳଙ୍କିନୀ ହାତେ କାହିଁପାଇଁ ଛିଦ୍ରଘଟ ଦିଆଇଲ ବ୍ରହ୍ମାଣ୍ଡଗୋପାଳହେ ।

ଯାହା ଇଚ୍ଛା ତାହା କର ତୁମ୍ଭେ ଏକା ଗତି ।

ତୁମ୍ଭେ ମୋ ସର୍ବସ୍ୱ ଧନ ତୁମ୍ଭେ ମୋର ପତି ହେ, ପ୍ରଭୁ ହେ !

ସବୁ ଲୀଳା ତୁମ୍ଭ ଇଚ୍ଛାଧୀନା, ଛିଦ୍ରଘଟେ ଜଳ ଆଣିଯାଉଛି ଅଧୀନା ହେ ।

(ଗୀତ ଗାଇ ଗାଇ ପ୍ରସ୍ଥାନ)

ପଟ ପରିବର୍ତ୍ତନ ।



## ଦ୍ୱିତୀୟ ଅଙ୍କ ।

### ତୃତୀୟ ଦୃଶ୍ୟ—ଯମୁନାତୀର ।

( ଯମୁନାଙ୍କ ଆବିର୍ଭାବ )

ଯମୁନା—(ସ୍ୱଗତଃ) ଅହା ! ଆଜ ମୋର କି ସୁଭାଗ୍ୟ ଦିନ !

### ଗୀତ ।

( କୀର୍ତ୍ତନ ସ୍ୱର )

କି ସୁଭାଗ୍ୟ ଦିନ ଆଜ ଘଟିଛି ମୋହର ।
ମହାଶକ୍ତି ରାଧା ନେବେ ଛିଦ୍ର ଘଟେ ନୀର ।
ସଖିମାନଙ୍କର ସଙ୍ଗେ ଗଜେନ୍ଦ୍ରଗମନେ ।
ମୋର ଜଳ ନେବା ଲାଗି ଆସିବେ ଯତନେ
କାତର ମୂର୍ତ୍ତି ତାଙ୍କର କରିବି ଦର୍ଶନ ।
ଯେବେ ଜଳ ପୂର୍ଣ୍ଣ ଘଟେ ହେବେ ସୁପ୍ରସନ୍ନ ।।
ସେତେବେଳେ ମୋହ ପ୍ରତି ପୂର୍ଣ୍ଣ କୃପା ହେବ ।
ପୂର୍ବ ତପସ୍ୟା ମୋହର ସଫଳ ହୋଇବ ।
ପବିତ୍ର କରିବି ଦେହ ଜନମ ଜୀବନ ।
ଜଳମୟୀ ହୋଇ ଏବେ ହେବି ଜଳେ ମଗ୍ନ ।

( ଅନ୍ତର୍ଦ୍ଧାନ )



(ସଖିମାନଙ୍କ ସହିତ ଛିଦ୍ର ଘଟ ନେଇ ଶ୍ରୀରାଧାଙ୍କ ପ୍ରବେଶ)

ଶ୍ରୀରାଧା—ସଖି ଏ ଲୋ ! ଏଇତ ଯମୁନା କୂଳ, ସଖି ! ଇଏ କଣ ? ଏ ଯମୁନା କୂଳକୁ ଆସି ପ୍ରାଣ ମୋର ଅକୁଳ ହେଉଛି କାହିଁକି ? ହୃଦୟ କମ୍ପି ଉଠୁଛି କାହିଁକି, ଅଙ୍ଗ ଅବଶ ହୋଇ ପଡ଼ୁଛି କାହିଁକି ? ପୂର୍ଣ୍ଣ ନେତ୍ରଜଳରେ ବକ୍ଷ ଭିଜି ଯାଉଛି, କଣ୍ଠରୁ ଘନ ଘନ ଶ୍ୱାସ ପଡ଼ୁଛି କାହିଁକି ? ଆଜ କାଳି—ନ୍ଦୀର କଳା ପାଣି କାଳନ୍ଦୀରୂପେ ବୋଧ ହେଉଛି, କାଳସର୍ପ ବିବରରେ ହସ୍ତ ଦେଲେ ଯେପରି ଆତଙ୍କ ହୁଏ, ଆଜ

କାଳିନ୍ଦୀ ଜଳକୁ ସ୍ପର୍ଶ କରିବା ପାଇଁ ମୋର ସେଇପରି ଆତଙ୍କ ହେଉଛି, ଅଜ ବାଳକବାରଣ ଜାଣି ଯେ, ମୋ କପାଳେ କଅଣ ଘଟାଇବେ, କିଛି ବୁଝି ପାରୁନାହିଁ ।

'ସଖି ! କପାଳ ଦୋଷରୁ ଏ କାଳିନ୍ଦୀ ଯେ ମୋ ପ୍ରତି ପ୍ରତିକୂଳ ହୋଇଛି, ଏହି ଦେଖ, ତରଙ୍ଗରୂପ କାଳଫଣୀ ବିସ୍ତାର କରି ମୋତେ ଭୟ ଦେଖାଉଛି, କୁଳୁକୁଳୁ ଧ୍ୱନି ଛଳରେ ଫଣ୍ଡିକ ଗର୍ଜନ କରୁଚି, ସ୍ପର୍ଶ କଲେତ ମୋତେ ଦଂଶନ କରିବ ? ମୁଁ କିପରି ଜଳ ନେବି ସଖି !

ବୃନ୍ଦା—କଅଣ କହିଲ ରାଧିକେ ! କାଳିନ୍ଦୀ ଭୟ ଦେଖାଉଛି ! ଏହା କଦାପି ନୁହେ; ସଖି ! କାଳିନ୍ଦୀ ତମକୁ ଭୟ ଦେଖାଉ ନାହିଁ, ତମ ପାଦପଦ୍ମକୁ ସ୍ପର୍ଶ କରି ପବିତ୍ର ହେବ ବୋଲି ସେ ଅନନ୍ଦରେ ତରଙ୍ଗରୂପ ବାହୁ ଟେକି ନୃତ୍ୟ କରୁଛି । ମଧୁର କୁଳୁକୁଳୁ ଧ୍ୱନିରେ ହୁଳହୁଳି ଦେଉଛି, ତୁମ୍ଭେ ନିର୍ଭୟରେ ଜଳ ନିଅ ।

ଶ୍ରୀରାଧା—ବୃନ୍ଦେ ! ମୋର ତ ଭରସା ହେଉ ନାହିଁ, ମୋତେ ଭୟ ଲାଗୁଛି ।

ବୃନ୍ଦା—ରାଜନନ୍ଦିନି ! ଜଳ ନେବା ପାଇଁ ଯଦି ଏତେ ଭୟ କରୁଛ, ତେବେ ଏକାନ୍ତ ମନରେ ସେହି ଭୟହାରୀ କୃଷ୍ଣଙ୍କୁ ଡାକ !

ଶ୍ରୀରାଧା—ହଁ ସଖି ! ଭଲ କହିଛ ।

( କୃତାଞ୍ଜଳିପୂର୍ବେ ଶ୍ରୀକୃଷ୍ଣଙ୍କ ଉଦ୍ଦେଶେ ସ୍ତବ )

ଗୀତ

( ଚିନ୍ତପଃ ମୂରତଃ ହୃଦପଟେ ଲେଖି-ବୃତରେ )

କାହିଁ ଅଛ ଦୟାମୟ ପ୍ରଭୁ ହେ ଶ୍ରୀହରି!

ଦୀନନାଥ ଦୀନବନ୍ଧୁ ଭବ-ଭୟ ହାରୀ ହେ, ପ୍ରଭୁ ହେ !

ତବ ଚରଣାରବିନ୍ଦ ଭରସା, କରିଛି କେବଳ ନ କରିଅ ନୈରାଶ୍ୟ ହେ ॥

ହୃଦିରେ ମୋ ବନମାଳୀ ହୃଦିର ନିବାସୀ ।
ଏ ଦାସୀଟିର ଦୟାକର ଘେନି ଲୋକ-ଲଜ୍ଜାଶି ହେ ପ୍ରଭୁ ହେ !
ତବ ଶ୍ରୀଚରଣ ଭରସା, କରୁଛି କେବଳ ନ କରିଅ ଲୋକହସା ହେ ।
ଭଜନ ପୂଜନ ମୁଁ ନ ଜାଣେ ଦୁରାଶା ।
ଏତେବେଳେ ଦରଶନ ଦିଅ ବଂଶୀଧାରୀ ହେ, ପ୍ରଭୁ ହେ !
ତବ ଶ୍ରୀଚରଣ ଭରସା, କରୁଛି କେବଳ ନ କରିଅ ଲୋକହସା ହେ ।।
ଅକୂଳ ଚିନ୍ତାସାଗରେ ପଡ଼ିଛି କିଶୋରୀ ।
ଶ୍ରୀପଦ ତରଣୀ ଦେଇ ଏଥୁ କର ପାର ହେ, ପ୍ରଭୁ ହେ !
ତବ ଶ୍ରୀଚରଣ ଭରସା, କରୁଛି କେବଳ ନ କରିଅ ଲୋକହସା ହେ

ଶ୍ରୀରାଧା—( ଅତି ଆକୁଳରେ ) ବୃନ୍ଦେ ! କାହିଁ ? ହରି ତ ଶୁଣି ନାହାନ୍ତି, ଦୟାମୟ ଜଣେ ଅଜି ମୋ ପ୍ରତି ନିର୍ଦ୍ଦୟ ହେଲେ ? କହ ସଖି ! କି ଉପାୟରେ ଏ କଳଙ୍କ ବାଧାରୁ ନିସ୍ତାର ପାଇବି ?

ବୃନ୍ଦା—ରାଧେ ! ତେବେ କଣ ପାଗଳୀ ହେଲ ?

ଯୋଗୀ, ଋଷି, ମୁନିଗଣେ ଯୋଗାସନେ,
କୋଟି କୋଟି ବର୍ଷ ତାଙ୍କ ନ ପାନ୍ତି ଯାହାଙ୍କୁ,
କ୍ଷଣେ ମାତ୍ର ଡାକି ତୁମ୍ଭେ ପାଇବ କପରି ?
ଅସମ୍ଭବ ଏ ଭରସା ତୁମ୍ଭର ଶ୍ରୀମତି !
ଯେ ବ୍ରଜ ପୁଣି ତାଙ୍କ ମୁରଲୀଧାରୀଙ୍କି,
ଦୟାକରି ଦରଶନ ଦେବେ ଗୋ ତୁମ୍ଭକୁ,
ଜଳରୁ ଉଦୟ ହୋଇ ଜଳଦ ବରନ ।

ଶ୍ରୀରାଧା—ହଉ ସଖି ! ଦେଖିବ ପୁଣି ଡାକିବି ?

## ଗୀତ ।

( ରାସ ବୃତ୍ତେ )

ଅହେ ହରି କୃପାମୟ କରୁଣାନିଧାନ !
ପଡ଼ିଛି ଘୋର ସଙ୍କଟେ କର ପରିତ୍ରାଣ ହେ ।। ୧ ।।

କୁଳ ଶୀଳ ଲାଜ ଭୟ ଜୀବନ ଯୌବନ ।
ସମର୍ପିଛି ତବ ପଦେ ତାହା କି ନ ଜାଣ ହେ ॥ ୨ ॥
ମନ ଅପମାନ ତୁମ୍ଭ, ତୁମ୍ଭେ ବୁଦ୍ଧି ବଳ ।
ଆଶା ନିରାଶା ଦୁରାଶା ଭାଷା ସମ୍ବଳ ହେ ॥ ୩ ॥
ତୁମ୍ଭେ ଭକ୍ତି ମୁକ୍ତି ଯୁକ୍ତି ଶ୍ରଦ୍ଧା ଶକ୍ତି ମୋର ।
ତୁମ୍ଭେ ଏକା ଗତି ପ୍ରଭୁ ! ପ୍ରାଣେର ଈଶର ହେ ॥ ୪ ॥
କେତେ ସୁଦୟା ତବ ମୋତେ କର ଦାନ ।
ରାଧାକାନ୍ତଙ୍କ ନାମ ଘୋଷୁଥ ବଦନ ହେ ॥ ୫ ॥
ଛିଦ୍ର ଘଟେ ଜଳପୂର୍ଣ୍ଣ କରାଅ ଶ୍ରୀହରି ।
ଶ୍ରୀହରି ! ଶ୍ରୀହରି ! ପ୍ରଭୁ ! ଶ୍ରୀହରି ! ଶ୍ରୀହରି ! ହେ ॥୬॥

(ଏହି ସମୟରେ ଶ୍ରୀରାଧାଙ୍କ କଳସ ମଧ୍ୟରେ ଶ୍ରୀକୃଷ୍ଣଙ୍କର ଅବିର୍ଭାବ ଓ ଅଭୟ ପ୍ରଦାନ)

ଶ୍ରୀକୃଷ୍ଣ— "ଅଭୟ ଦେଉଛି ଭୟ ନ କର ମନରେ,
ଛିଦ୍ର ଘଟେ ଜଳ ଘେନି ଯାଅ ନନ୍ଦପୁରେ"

ଶ୍ରୀରାଧା—( ଶୂନ୍ୟରୁ ଏହି ଶବ୍ଦ ଶୁଣି ) ସଖିଗଣ ! ଏହି ଶୁଣ, ନୀରଦବରନ ନାଗରେ ଉଦୟ ହୋଇ ମୋତେ ଅଭୟ ଦେଉଅଛନ୍ତି । ଏବେ ଛିଦ୍ରଘଟରେ ଜଳପୂର୍ଣ୍ଣ (ଜଳରେ ଘଟ ବୁଡ଼ାଇବା ଅଭିନୟ )

ସଖୀଗଣ—( ଶ୍ରୀରାଧାଙ୍କୁ ) ଜୟ ଶ୍ରୀରାଧାଙ୍କର ଜୟ ! ଜୟ ଶ୍ରୀରାଧାଙ୍କର ଜୟ !! ଜୟ ଶ୍ରୀରାଧାଙ୍କର ଜୟ ।।।

ଶ୍ରୀରାଧା—ସଖି ଏ କେ ! ମୋର କାହିଁକି ଜୟ ଦେଉଛ ? ସେହି ଦୟାମୟ ଶ୍ରୀକୃଷ୍ଣଙ୍କର ଜୟ ଦେଇ ଦେଇ ଚାଲ ଜଳ ଘେନି ଯିବା ।

[ ସମସ୍ତଙ୍କ ପ୍ରସ୍ଥାନ ]

**ପଟପରିବର୍ତ୍ତନ ।**



## ଦ୍ୱିତୀୟ ଅଙ୍କ ।

### ଚତୁର୍ଥ ଦୃଶ୍ୟ—ନନ୍ଦଭବନ ।

(ଶ୍ରୀକୃଷ୍ଣ ମୂର୍ଚ୍ଛିତ; ଯଶୋଦା, ନନ୍ଦ ଉପାନନ୍ଦ ଶୋକରେ ନିମଗ୍ନ ଓ ମାୟାବୈଦ୍ୟ ବସିଥିବାର)

ଯଶୋଦା—(ବୈଦ୍ୟ ପ୍ରତି) ବତ୍ସ! କାହିଁ ଶ୍ରୀରାଧା ତ ଏପର୍ଯ୍ୟନ୍ତ ଜଳ ନେଇ ଆସିଲେ ନାହିଁ? ତା'ର ଆସିବା ବିଳମ୍ବ ଦେଖି ମୋର ବଡ଼ ଆଶଙ୍କା ହେଉଛି। କେ ଜାଣେ, ସିଏତ ଅଉ ଶୂନ୍ୟ ଘଟ ନେଇ ଆସୁନାହିଁ?

ବୈଦ୍ୟ—ମା! ଶ୍ରୀରାଧା ଯଦି ଶୂନ୍ୟ ଘଟ ନେଇ ଆସେ, ତା'ହେଲେ ଯେ ବେଦ ବିଧି ସବୁ ମିଥ୍ୟା ବୋଲି ଜାଣିବା। ସ୍ଥିର ହୁଅ, ଏହିକ୍ଷଣି ସେହି ସତୀ ସାଧ୍ୱୀ ଜଳ ନେଇ ଆସିବ।

(ସଖୀମାନଙ୍କ ସହ ଜଳପୂର୍ଣ୍ଣ ଘଟ କକ୍ଷେ ଶ୍ରୀରାଧାଙ୍କ ପ୍ରବେଶ)

ବୃନ୍ଦା—ବୈଦ୍ୟରାଜ! ରାଧା ଜଳ ଆଣିଛନ୍ତି, ଗ୍ରହଣ କର।

ବୈଦ୍ୟ—(ରାଧାଙ୍କ ପ୍ରତି) ଦିଅ ସତି! ଜଳ ଦିଅ, (କର ପ୍ରସାରିବା)

ଶ୍ରୀରାଧା—(ଜଳଘଟ ବଢାଇଦେବା ଓ ବୈଦ୍ୟ ସେ ଜଳକୁ ମୂର୍ଚ୍ଛିତ ଥିବା ଶ୍ରୀକୃଷ୍ଣଙ୍କ ଉପରେ ସିଞ୍ଚିବା ଏବଂ ଶ୍ରୀକୃଷ୍ଣ ଚକ୍ଷୁ ମେଲି ଉଠିବସିବା ଅନନ୍ତର)

ଶ୍ରୀକୃଷ୍ଣ—(ସଂଜ୍ଞା ଲଭିଲେ ଯଶୋଦାଙ୍କ ପ୍ରତି) ମା! ମା!! ମୋତେ ଭୋଖ ଲାଗୁଛି, ଖାଇବାକୁ ଦେ।

ଯଶୋଦା—(କରୁଣସ୍ୱରେ) ନୀଳମଣିରେ! ଏତେବେଳକୁ କି ଏଣି ତୋର ଅଭାଗିନୀ ମାଆ ମନେ ପଡ଼ିଲା? ଆ, ଆ ବାପ, ଆ, ଆ, କୋଳକୁ ଆ, ତୋ' ଚନ୍ଦ୍ରମୁଖରେ ଲବଣୀ ଦେବି।

(ଏହା କହି ଶ୍ରୀକୃଷ୍ଣଙ୍କୁ କୋଳେଇବା ଅନନ୍ତର)

ବୃନ୍ଦା—ମା ଯଶୋମତି! ତମର ଏମିତ ଟିକିଏ ଦୟାମାୟା ନାହିଁ? ଆମ ରାଜକୁମାରୀ ଜଳ ଆଣିବାରୁ ତୁମ୍ଭ ନୀଳମଣି ବଞ୍ଚିଲେ,

ନଇଲେ କଣ ହୋଇଥାନ୍ତା କହଲ ଦେଖି ? ତୁମ୍ଭର ଉଚିତ
ହେଉଛି—ଅଟେ ରାଧାଙ୍କୁ କାଟିଗଇ ଥାଅନ୍ତୁ ।

ଯଶୋଦା—ବୃନ୍ଦେ ! ଯଥାର୍ଥ କହୁଛ, ମୁଁ ଭୁଲିଯାଇଛି । (ରାଧାଙ୍କ ପ୍ରତି)
ଆସ ମା ! ମୋ କୋଳକୁ ଆସ । ମା ! ତୁ ସତୀଶିରୋମଣି; ମୁଁ
କଳ୍ୟାଣ କରୁଛି—ତୋର ଯଶଃକୀର୍ତ୍ତି ଜଗତରେ ବିଖ୍ୟାତ
ହେଉ, ମା ! ତୋ'ଲାଗି ଆଜି ନୀଳମଣି ଧନକୁ ମୋର
ପାଇଲି । (ଏହା କହି ବାମକାଖରେ ଶ୍ରୀରାଧାଙ୍କୁ ଓ
ଦକ୍ଷିଣ କାଖରେ ଶ୍ରୀକୃଷ୍ଣଙ୍କୁ ଘେନ ଦଣ୍ଡାୟମାନା, ସଖୀଗଣ
ହୁଳହୁଳି ପୁଷ୍ପାଞ୍ଜଳି ଦେଇ ବନ୍ଦାଇବା ଅଭିନୟ)

ସଖିମାନଙ୍କ ସୁମଧୁର ନୃତ୍ୟ ଓ ଗାୟନ ॥

ଗୀତ ।

(ମାଧୁରୀ ରେ ମାଧୁରୀ—ବୃତ୍ତେ)

ଦେଖ ଦେଖ ପ୍ରିୟସହି !
ରାଣୀ ଯଶୋମତୀ କୋଳେ କାହ୍ନୁ ସଙ୍ଗେ ରହି ॥
କିବା ଇନ୍ଦ୍ରନୀଳମଣି କାଞ୍ଚନର ଆଭା ।
କି ଅବା ନବୀନ-ଘନେ ସୌଦାମିନୀ ପ୍ରଭା ॥
କିବା ତମାଳଲତିକା କନକ ବଲ୍ଲିରୀ ।
କିବା ମରକତ ସହ କାଞ୍ଚନ ଚିରୀ ॥

[ବ୍ରଜବାସୀ]

[ସଖିମାନଙ୍କ ଗାନ ସମୟେ ପରଦା ପତନ]

ଯବନିକା ।

(ଇତି ଶ୍ରୀରାଧାଙ୍କ କଳଙ୍କଭଞ୍ଜନ ନାଟକ ସମ୍ପୂର୍ଣ୍ଣ)



ଏସ୍, ଆର୍, କୋ ଅପରେଟିଭ୍ ପ୍ରେସ—କଟକ ।

# ପ୍ରକାଶକର ନିବେଦନ ।



ଏହି ନାଟକ ଖଣ୍ଡିକର ପ୍ରଥମ ସଂସ୍କରଣରେ ଥିବା ଭ୍ରମମାନ ବାବାଜୀ ମହାଶୟଙ୍କ ଦ୍ୱାରା ସଂଶୋଧିତ ଓ ସ୍ଥାନେ ସ୍ଥାନେ ନୂତନ ଗୀତମାନ ସନ୍ନିବେଶିତ ହୋଇ ବର୍ତ୍ତମାନ ଦ୍ୱିତୀୟ ଥର ମୁଦ୍ରିତ ହେଲା ।

ତା ୧୭ । ୪ । ୩୦ ପ୍ରକାଶକ:— ଶ୍ରୀ ଦାଶରଥି ଦାସ

---

## 'ବାବାଜୀ'ଙ୍କ ଅନ୍ୟାନ୍ୟ ସମସ୍ତ ନାଟକ ନିମ୍ନ ଠିକଣାରେ ମିଳେ ।

| | | | |
|---|---|---|---|
| ବୃହତ୍ ମାନଭଞ୍ଜନ ନାଟକ | ଟ ୦ ୫ | ଦୋଳଲୀଳା ନାଟକ | ଟ ୦ ।୮ |
| ଶାରଦୀୟ ରାସଲୀଳା | ଟ ୦ । | କାଳୀୟ ଦମନ | ଟ ୦ ।୨ |
| ବସନ୍ତ ଉତ୍ସବ ନାଟକ | ଟ ୦ ॥୵ | କୃଷ୍ଣ କାଳୀ | ଟ ୦ ୰ |
| ବରହମାନ ନାଟକ | ଟ ୦ । | ବସନ୍ତଲୀଳା | ଟ ୦ । |
| ଦୁର୍ଗ୍ୟମାନ ନାଟକ | ଟ ୦ । | ଗୀତ ଗୋବିନ୍ଦ | ଟ ୦ ।୵ |
| ବାଲ୍ୟଲୀଳା ୧ମ ୨ୟ | ଟ ୦ ୫ | ଦଣ୍ଡିରାଜା | ଟ ୦ ୰ |
| ପୌଗଣ୍ଡଲୀଳା | ଟ ୦ ।୦ | ଗୋବର୍ଦ୍ଧନ ଲୀଳା | ଟ ୦ ॥୵ |
| ରାଧା ପ୍ରେମଲୀଳା | ଟ ୦ । | କିଶୋର ଚନ୍ଦ୍ର | ଟ ୦ ୰ |
| ଜନ୍ମଲୀଳା ୧ମ ୨ୟ | ଟ ୦ ୫୰ | ନିକୁଞ୍ଜ ମିଳନ | ଟ ୦ ॥୵ |
| ବୃନ୍ଦାବନ ବିଳାସ | ଟ ୦ । | ସତୀପରୀକ୍ଷା | ଟ ୦ ୰ |
| ମିଳନ ମାଧୁରୀ | ଟ ୦ ॥୵ | ବ୍ରଜଲୀଳା | ଟ ୦ । |
| ଚନ୍ଦ୍ରାବଳୀ ବିଳାସ | ଟ ୦ ।୰ | ମାନଭଞ୍ଜନ | ଟ ୦ । |
| ମୋ କାଳିଆ ହାତୀ ୨ୟ ଟ ୦ ୵, ୩ୟ ଟ ୦ ୵, ୪ର୍ଥ | | | ଟ ୦ ୵ |

---

ପ୍ରାପ୍ତିସ୍ଥାନ:— ଦାଶରଥି ପୁସ୍ତକାଳୟ, ବାଲୁବଜାର କଟକ ।

# ବିଜ୍ଞାପନ ।



ଏତଦ୍ଦ୍ୱାରା ଭକ୍ତବୃନ୍ଦଙ୍କୁ ଜଣାଉଅଛୁଁ ଯେ ବ୍ରଜବାସୀ ବାବାଜୀ ଶ୍ରୀ ବୈଷ୍ଣବଚରଣ ଦାସଙ୍କ ରଚିତ ସମସ୍ତ ବ୍ରଜଲୀଳା ନାଟକ ଗୁଡିକ ଅତ୍ୟନ୍ତ ନୂତନ କଥା, ପାଠକଲା ମାତ୍ରେ ଯୁଗଳପ୍ରେମରସ ମକର-ନ୍ଦ ଅଧିକର ମୁଖ୍ୟ ହୋଇ ଶୃଙ୍ଗାର, ହାସ୍ୟ, କରୁଣ, ରୌଦ୍ର, ବୀର, ଶାନ୍ତ ପ୍ରଭୃତି ନବରସର ବିକାଶରେ ହୃଦୟ ବିଗଳିତ ହୋଇଯାଏ । ଏସବୁ ଭକ୍ତିରସର ବିପୁଳ ପ୍ଲାବନରେ ଭକ୍ତର ହୃଦୟରେ ଭାବ କୁସୁମ ପ୍ରସ୍ଫୁଟିତ ହୋଇପଡ଼େ, ଅତଏବ ମନୋଯୋଗ ପୂର୍ବକ ପାଠକଲେ ନାଟକର ସମସ୍ତ ମାହାତ୍ମ୍ୟ ଜାଣିପାରିବେ ।

ଏହାଛଡ଼ା ବାବାଜୀ ମହାଶୟଙ୍କର ସମସ୍ତ କୀର୍ତ୍ତନ ପୁସ୍ତକ ଓ ସଙ୍ଗୀତ, ଭଜନ, ପ୍ରଭୃତି ପୁସ୍ତକମାନ ଅମ୍ଭ ନିକଟରେ ଗଚ୍ଛିତ ଅଛି, ଗ୍ରାହକମାନେ ପତ୍ରଦେଲେ ଭି: ପି: ପାର୍ଶଲ ଦ୍ୱାରା ଯାବତୀୟ ପୁସ୍ତକ ପଠାଇବାକୁ ପ୍ରସ୍ତୁତ ଅଛୁଁ ।

ଏହି ନାଟକ ପୁସ୍ତକମାନଙ୍କ ବ୍ୟତୀତ ଏହି ପୁସ୍ତକାଳୟରେ ସମସ୍ତ ପ୍ରକାର ଓଡ଼ିଆ ପୁସ୍ତକ ଯଥା:—ପୁରାଣ, ଗୀତା, ମାହାତ୍ମ୍ୟ, ରହସ୍ୟ, ସୁଆଙ୍ଗ, ଫାର୍ଦ୍ଦି ପ୍ରଭୃତି ଯାହା ଯାହା ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାରେ ମୁଦ୍ରିତ ହୋଇଅଛି, ତାହା ସମସ୍ତ ଉଚିତ୍ ମୂଲ୍ୟରେ ବିକ୍ରୟ ନିମିତ୍ତ ରକ୍ଷିତ ଅଛି । ମୋଫସଲର ଗ୍ରାହକମାନଙ୍କୁ ସନ୍ତୋଷ କମିଶନ ଦିଆଯାଏ । ଥରେମାତ୍ର ପରୀକ୍ଷା ପ୍ରାର୍ଥନୀୟ ।

**ଦାଶରଥି ପୁସ୍ତକାଳୟ**
**ବାଲୁବଜାର**
**କଟକ.**



ନିବେଦକ
**ଶ୍ରୀ ଦାଶରଥି ଦାସ**